ପ୍ରାଚୀ ଗ୍ରନ୍ଥମାଳା　　　　　　　　　　　　　　　　　　　　　ଅଷ୍ଟାଦଶ

# ଗୁରୁଭକ୍ତି ଗୀତା

## ୨




ଉତ୍କଳ ବିଶ୍ୱବିଦ୍ୟାଳୟ

ପ୍ରାଚୀ ଗ୍ରନ୍ଥମାଳା—ଅଷ୍ଟାଦଶ

# ଗୁରୁଭକ୍ତି ଗୀତା

(ଦ୍ୱିତୀୟ ଖଣ୍ଡ)

---

ପ୍ରଧାନ ସଂପାଦକ—

ଅଧ୍ୟାପକ ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି ଏମ୍. ଏ.

# ଗୁରୁଭକ୍ତିଗୀତା

(ଦ୍ୱିତୀୟ ଖଣ୍ଡ)

## ଅଚ୍ୟୁତାନନ୍ଦ ଦାସଙ୍କ କୃତ

ଟୀକା ଓ ମୁଖବନ୍ଧ ସହ

## ପ୍ରାଚୀ ସମିତି ଦ୍ୱାରା

ସଂକଳିତ ଓ ପ୍ରକାଶିତ



ମୂଲ୍ୟ ଆଠଅଣା ମାତ୍ର

# ଗୁରୁଭକ୍ତି ଗୀତା

( ଦ୍ୱିତୀୟ ଖଣ୍ଡ )

---

ଅଚ୍ୟୁତାନନ୍ଦ ଦାସଙ୍କ କୃତ

ଟୀକା ଓ ମୁଖବନ୍ଧ ସହ

ପ୍ରାଚୀ ସମିତି ଦ୍ୱାରା

ସଙ୍କଳିତ




ପ୍ରକାଶକ

ଉତ୍କଳ ବିଶ୍ୱବିଦ୍ୟାଳୟ

ବାଣୀବିହାର

ଦ୍ୱିତୀୟ ମୁଦ୍ରଣ

୧୯୭୦

ଏକଟଙ୍କା ପଚିଶ ପଇସା ମାତ୍ର

# ମୁଖବନ୍ଧ

ଗୁରୁଭକ୍ତି-ଗୀତା ମହାପୁରୁଷ ଅଚ୍ୟୁତାନନ୍ଦଙ୍କ କୃତିମାନଙ୍କ ମଧ୍ୟରୁ ଏକତମ । ଏହା ଏକ ବୃହତ୍ ଗ୍ରନ୍ଥ ଏବଂ ତିନୋଟି ଭାଗ ବା ଖଣ୍ଡରେ ବିଭକ୍ତ । ଆଲୋଚିତ ଗ୍ରନ୍ଥଟି ଦ୍ୱିତୀୟ ଖଣ୍ଡ ଅଟେ । ଏହା ଅଠର ଗୋଟି ପଟଳ ବା ଅଧ୍ୟାୟରେ ବିଭକ୍ତ । ଏଥିରେ ଶିଷ୍ୟମାନେ ଗୁରୁ ସ୍ତବରେ ନାନା ଜ୍ଞାତବ୍ୟ ଏବଂ ଅତୀତ ଭବିଷ୍ୟତର ବିଷୟ ପଚାରିଅଛନ୍ତି ଏବଂ ଗୁରୁ ଶିଷ୍ୟମାନଙ୍କ ମନ ଜାଣି ସେହି ପ୍ରଶ୍ନମାନଙ୍କର ସଦୁତ୍ତର ପ୍ରଦାନ କରିଅଛନ୍ତି । ସେ ପ୍ରଶ୍ନୋତ୍ତରର ଅବତାରଣା କରିବା ପୂର୍ବରୁ ଗ୍ରନ୍ଥରୁ ପ୍ରାପ୍ତ ଶିଷ୍ୟମାନଙ୍କର ନାମ ଧାମ ଓ କୁଳଶୀଳାଦିର ପରିଚୟ ପ୍ରକାଶ କରିବା ଉଚିତ ।

ରାମଚନ୍ଦ୍ର, ଉତ୍ଥାନ, ପବନ, ମୁକୁନ୍ଦ, ଅନନ୍ତ, ବସୁ, ଯାଦବ, ଆନନ୍ଦ, ବାଳକ, ମଧୁ, ମଥୁରା, ଭରଥ, ବିଷ୍ଣୁ, ସୁଦାମ, ଦୋଷର, ବନ୍ଦଦାସ, ଯଦୁ, ବୃନ୍ଦାବନ, ବେକ, ମୁରାରି, ଗୋପାଲ ମାଧବ, ଯୁଦ୍ଧିଷ୍ଠି ଦାସ, ନରସିଂହ, ଗୋକୁଳଚନ୍ଦ୍ର, ବଂଶୀ ଦାସ, ହରିହର, କରିଆ ହରିଦାସ, ସାହାଣୀ ଗୋପାଳ ଓ ପ୍ରେମା ଗୋପାଳ ପ୍ରଭୃତି ଶିଷ୍ୟମାନଙ୍କର ନାମ ଏକାଧିକ ବାର ଗ୍ରନ୍ଥର ବିଭିନ୍ନ ପଟଳ ବା ଅଧ୍ୟାୟରେ ପ୍ରସଙ୍ଗକ୍ରମେ କଥିତ ହୋଇଅଛି । ଏହି ଶିଷ୍ୟମାନେ ଗ୍ରନ୍ଥର ବିଭିନ୍ନ ସ୍ଥାନରେ ସେମାନଙ୍କ ଗୁରୁଦେବ ମହାପୁରୁଷ ଅଚ୍ୟୁତାନନ୍ଦଙ୍କୁ ନାନାପ୍ରକାର ପ୍ରଶ୍ନ କରିଅଛନ୍ତି ଏବଂ ମହାପୁରୁଷ ଯଥୋଚିତ ଉତ୍ତର ଦେଲାବେଳେ ସେମାନଙ୍କୁ ଯେଉଁ ଧରଣର ସଂବୋଧନ କରିଅଛନ୍ତି, ସେଥିରୁ କେତେ ଶିଷ୍ୟଙ୍କର ଜାତିକୁଳ ସମ୍ବନ୍ଧରେ ନିର୍ଣ୍ଣୀତ ହୋଇପାରେ । ଅଧିକାଂଶ ସ୍ଥଳରେ ସକଳ ଶିଷ୍ୟଙ୍କୁ 'ବରଜ ଗୋପାଳ', ଗୋପାଳକୁଳ' ପ୍ରଭୃତି ଶବ୍ଦରେ ବିଶ୍ଳେଷିତ ଦେଖି ଯେଉଁମାନେ ତାଙ୍କର ଶିଷ୍ୟ-ସମ୍ପ୍ରଦାୟଙ୍କୁ ଏବଂ ଶେଷରେ ସ୍ୱୟଂ ମହାପୁରୁଷଙ୍କୁ ମଧ୍ୟ ଗଉଡ଼ ଜାତିର ଅନ୍ତର୍ଭୁକ୍ତ କରିପକାନ୍ତି, ସେମାନଙ୍କର ବିଷୟ ପଙ୍କତ ଅଭ୍ରାନ୍ତ ନୁହେଁ । ଗୁରୁଭକ୍ତି ଗୀତାର ଦ୍ୱିତୀୟ ଖଣ୍ଡର ସମ୍ୟକ୍ ଆଲୋଚନା କଲେ ଜଣାଯାଏ ଯେ, ଅଚ୍ୟୁତାନନ୍ଦ ବିଭିନ୍ନ ଜାତିର ଲୋକଙ୍କୁ ଶିଷ୍ୟରୂପେ

ଭ୍ରମଣ କରିଥିଲେ । ସେହି ବିଭିନ୍ନ ଜାତିର ଶିଷ୍ୟମାନଙ୍କ ମଧ୍ୟରେ ଜଣେ ରାମଦାସ କୁମ୍ଭାର, ଆଉଜଣେ ରାମ କମାର, ଜଣେ ନିଧି କମାର ଓ ଜଣେ ନାରଣ କମାର ଜାତିର ଲୋକ ଥିଲେ । ଏହି ଶିଷ୍ୟମଣ୍ଡଳୀ ମଧ୍ୟରେ ବାରଗୋଟି ଶିଷ୍ୟ ପ୍ରଧାନ ଥିଲେ । ସେମାନଙ୍କ ସହାୟତାରେ ଉତ୍କଳରେ ରାସଲୀଳା ରଚନା ଏବଂ ମୂଢ଼ ଗୋପାଳମାନଙ୍କୁ ସତ୍‌ପଥକୁ ଆନୟନ ଓ ମୁକ୍ତି ପଥ ପ୍ରଦର୍ଶନ କରିବା ପାଇଁ ମହାପୁରୁଷ ମାନବ ବିଗ୍ରହ ଧାରଣ କରିଥିଲେ—ଏହା ତାହାଙ୍କର ଶ୍ରୀମୁଖ ଉକ୍ତି । ସେହି ବାର ପ୍ରଧାନ ଶିଷ୍ୟଙ୍କର ନାମ, ଯଥା :—ମୁକୁନ୍ଦ, ଅନନ୍ତ ବସ୍ତ୍ର, ପବନ, ସୁଦାମ, ଯାଦବ, ବାଳକ, ମଧୁ, ମଥୁରା, ଉତ୍ଥାନ, ଗୋବିନ୍ଦ ଓ ବୃନ୍ଦାବନ । ଗୋପାଳ ଜାତିକୁ ସଦୁପଦେଶ ଦେଇ ସତ୍‌ପଥକୁ ଆଣିବାପାଇଁ ମହାପୁରୁଷ ଏକାଧିକବାର ଶିଷ୍ୟମାନଙ୍କୁ ଉପଦେଶ ଦେଇ ଅଛନ୍ତି ଯଥା :—

*  *  *

'ବିଷ୍ଣୁଦାସ ଗଣେ ତୁମ୍ଭେ ହେତୁ ମନେ ଧର
ପାଷାଣ୍ଡ ଗୋପାଳ କୁଳେ ହୁଅ ଅଧିକାର'

—୧୪ ପଟଳ

'ବିଷ୍ଣୁ ଅଂଶ ନାହାନ୍ତି ତ ବଇରାଗୀ ଜନ
ଏଥି ପାଞ୍ଚ ଅଂଶ ଛନ୍ତି ଅନ୍ୟ ଅଂଶ ମାନେ
କରି ଭିକ୍ଷାକୁ ସେ ଯେଣୁ କରିଥିବ ମନ
ମୂଢ଼ ସେ ଗଉଡ଼ ଘରେ ବୁଲୁଥିବ ପୁଣ
ନେତ ଗୋପାଳର ଘରେ ବୁଲୁଥିବ ନିତି'

*  *  *  *

—୧୫ ପଟଳ

ପ୍ରୋକ୍ତ ଶିଷ୍ୟମଣ୍ଡଳୀ ମଧ୍ୟରୁ 'ପଞ୍ଚଶାଖା' ମହାପୁରୁଷଙ୍କର ନିଜ ଅଂଶ ବୋଲି କଥିତ ହୋଇଅଛନ୍ତି । ସେମାନଙ୍କର ନାମଧାମ ଓ କାର୍ଯ୍ୟକେନ୍ଦ୍ର ଗ୍ରନ୍ଥରେ ବିଶଦ ଭାବରେ ବର୍ଣ୍ଣିତ ହୋଇଅଛି । ଯଥା—ରାମଚନ୍ଦ୍ର ଦାସ ପ୍ରଥମ ଶାଖା, ଏବଂ ଚଟେଶୋପୂଳା ନିକଟବର୍ତ୍ତୀ ନେମ୍ବାଳ, ନିବଣା ତଟସ୍ଥିତ ଦ୍ୱାରଗ୍ରାମ ଏବଂ

ତାକେୀଶ୍ଵର ବନ ତାଙ୍କର ପୀଠ ଓ କାର୍ଯ୍ୟକ୍ଷେତ୍ର । ଭ୍ରଅବାର ଦ୍ୱିତୀୟ ଶାଖା ଏବଂ ଖଣ୍ଡର ବନ ତାଙ୍କର ପୀଠ ଓ କାର୍ଯ୍ୟକ୍ଷେତ୍ର । ବଳ ଦାସ ତୃତୀୟ ଶାଖା ଏବଂ ଚନ୍ଦ୍ରଭାଗା ଓ ସଙ୍କରସ ଗ୍ରାମ ତାଙ୍କର ପୀଠ । ଧର୍ମ ଚତୁର୍ଥ ଶାଖା ଏବଂ କୁଶଭଦ୍ରା ନଦୀକୂଳ, ଏକାମ୍ର କାନନ, ବନ୍ଦ୍ରୁ ସାଗର ଓ ଧ୍ୱଳେଲେ ଆଦି ତାଙ୍କର ପୀଠ । ବିଷ୍ଣୁ ଦାସ ପଞ୍ଚମ ଶାଖା ଏବଂ ବନଖଣ୍ଡି, ହେମବନ, ଓ ସୁନପୁର ତାଙ୍କର ସ୍ଥାନ ।

"ଏହି ପଞ୍ଚଶାଖା ମୋର ଅଟେ ନିଜ ଅଂଶ
ଭାରତ ଗୋପାଲ କୁଳ ଓଡ଼ିଶା ସେ ଦେଶ"

ଏହା ମହାପୁରୁଷଙ୍କ ସ୍ଵମୁଖ ହିତ ଏବଂ ଏଥିରେ ଅବିଶ୍ଵାସ କରିବାର ସେପରି କୌଣସି କାରଣ ନାହିଁ ।

ଅଚ୍ୟୁତଙ୍କର ଶିଷ୍ୟସଂଖ୍ୟା ଷୋଳସହସ୍ର—ଏହା ତାଙ୍କର ନିମ୍ନଲିଖିତ ଉକ୍ତିରୁ ଜଣାପଡ଼େ । ଯଥା :—

'ରସିକ ଯେ ବାରସହସ୍ରେ ବାରଟିଆ ସାର
ଗୃଣସସ ଯୋଗାରୂଢ଼ ପଞ୍ଚସଖାଙ୍କର
ଏଣୁକରି ଅଚ୍ୟୁତର ଷୋଳସହସ୍ର ଶାଖା
ଯୁଗେ ଯୁଗେ ଅନନ୍ତର ଭଗତରେ ଲେଖା'

ସେହିର ଅନ୍ୟତ୍ର ମହାପୁରୁଷ ରାମଦାସ ଏବଂ ତାର ପ୍ରଧାନ ଶିଷ୍ୟଙ୍କୁ ନିମ୍ନଲିଖିତ ପ୍ରକାରେ କହିଅଛନ୍ତି । ଯଥା—

ଷୋଳ ସହେ ସାର ବାରଟିଆ ରାମ ଦାସ
ବାରଦାସେ ସାର ସପ୍ତ ଶାଖା ଅଟେ ଅଂଶ
ସପ୍ତଶାଖା ବଂଶ ସାର ପଞ୍ଚଶାଖା ପୁଣ
ପଞ୍ଚଶାଖା ସାର ପୁଣ ଅଚ୍ୟୁତର ଗଣ'

ଅର୍ଥାତ୍ ଷୋଳସହସ୍ର ଶିଷ୍ୟଙ୍କ ମଧ୍ୟରୁ ରାମଦାସଙ୍କ ନେତୃତ୍ୱରେ ବାରଜଣ ଶିଷ୍ୟ ପ୍ରଧାନ । ସେମାନଙ୍କ ମଧ୍ୟରେ ସପ୍ତଶାଖା ସାର । ସେହି ସପ୍ତଶାଖାଙ୍କ ମଧ୍ୟରେ ପଞ୍ଚଶାଖା ସାର ଏବଂ ସେମାନଙ୍କ ବିଷୟ

ପୂର୍ବରୁ କଥିତ ହୋଇଅଛି । ସେହି ପଞ୍ଚଶାଖାଙ୍କ ମଧ୍ୟରେ ଅଚ୍ୟୁତ ସ୍ୱୟଂ ସାର ଅଟନ୍ତି । ଦ୍ୱାପର ଯୁଗରେ ତାଙ୍କର ନାମ ସୁଦାମା ଗୋପାଳ, ତ୍ରେତୟାରେ ନଳ, ସତ୍ୟ ଯୁଗରେ କୃପାଜଳ, ଅନନ୍ତ ଯୁଗରେ ଶୁଭନନ୍ଦ ଗୋପାଳ ଥିଲା । ଯୁଗେ ଯୁଗେ ତାଙ୍କ ସଙ୍ଗେ ପ୍ରଭୁଙ୍କ ନେତୃତ୍ୱରେ ବାରଦାସ ରାସଲୀଳା କରିବାକୁ ଜାତ ହୋଇଥାନ୍ତି । ଅନନ୍ତ ଯୁଗରେ ପ୍ରଭୁଙ୍କ ସହିତ ସେମାନେ ତାଳ ବଜାଉଥିଲେ, ସତ୍ୟ ଯୁଗରେ ନୈମିଷାରଣ୍ୟରେ ଗୃହପ୍ରବେଶ ଧରି ମୁନିମାନଙ୍କ ସହିତ ନାମକୀର୍ତ୍ତନ କରୁଥିଲେ । ତ୍ରେତୟା ଯୁଗରେ ପ୍ରଭୁଙ୍କ ଗହଣରେ ହନୁ ଏ ନଳ-ନୀଳଙ୍କ ସଙ୍ଗେ ତାଣ୍ଡବ ନୃତ୍ୟ କରୁଥିଲେ । ଦ୍ୱାପର ଯୁଗରେ ରାସଲୀଳା ସେମାନଙ୍କର କାର୍ଯ୍ୟ ହୋଇଥିଲା । କଳି ଯୁଗରେ ଯେତେବେଳେ ଶ୍ରୀକୃଷ୍ଣଚୈତନ୍ୟ ଅବତୀର୍ଣ୍ଣ ହେଲେ, ସେତେବେଳେ ସେ ସେମାନଙ୍କୁ ଖୋଳ କରତାଳ ଦେଲେ । ଏହିଠାରେ ମହାପୁରୁଷ କହୁଅଛନ୍ତି—

'ସେ ତୁମ୍ଭଙ୍କୁ ଦେଲେ ଖୋଳ କରତାଳ ଘେନି
ଓଡ଼ିଶାରେ ରହିବାସ ରହିଲ ତୁମ୍ଭେ ତେଣୁ
ପ୍ରତାପର ଆଗ୍ରେ ଗଲେ ପିତାଙ୍କର ବଳେ
ରହିବାସ ରହିଲୁ ଅମ୍ଭେ ଓଡ଼ିଶା ଦେଶରେ'

ଯେଉଁ ବହୁତବାଦୀମାନେ ଅଚ୍ୟୁତାନନ୍ଦଙ୍କୁ ଜାତିରେ ଗଉଡ଼ ବୋଲି ମତ ପୋଷଣ କରନ୍ତି, ସେମାନଙ୍କର ମନେ ରଖିବା ଉଚିତ ଯେ—ମହାପୁରୁଷ ତାଙ୍କ ଗ୍ରନ୍ଥମାନଙ୍କ ଭିତରେ କେଉଁଠାରେ ଆପଣାକୁ ଗଉଡ଼ ବୋଲି କହି ନାହାନ୍ତି । ସେ ଅମ୍ଭ ପରିଚୟ ଦେବାକୁ ଯାଇ ବରଜନନ୍ଦନ, ବ୍ରଜକୁଳ ପ୍ରଭୃତି ଯେଉଁ କେତେକ ଶବ୍ଦ ପୁନଃ ପୁନଃ ପ୍ରୟୋଗ କରି ଅଛନ୍ତି, ସେଥିରୁ ଜଣାଯାଏ ଯେ ସେ ବ୍ରଜଅଂଶରେ ଜନ୍ମଗ୍ରହଣ କରିଥିଲେ । ମହାପୁରୁଷଙ୍କର ନିମ୍ନ ଲିଖିତ ସ୍ୱମୁଖ ଉକ୍ତିଟିର ବିଶ୍ଳେଷଣ କରି ଦେଖିଲେ ଅମ୍ଭମାନଙ୍କର ଉକ୍ତ ଉକ୍ତିଟି ଯେ ନିଗୂଢ଼ ସତ୍ୟ, ଏହା ସମସ୍ତେ ହୃଦୟଙ୍ଗମ କରି ପାରିବେ ।

'ଜନ୍ମେ ଜନ୍ମେ ମୁହିଁ ପୁଣି ଭୃତ୍ୟ ପଣେ ଥିଲି
ପୂର୍ବ ଜନ୍ମେ ଗୋପାଳ କୁଳରେ ଜନମିଲି

ଲୀଳାକୁ ଲୀଳା ଯେ କରି'ଛି ଲୋଚନେ ଜାତ
କେଶବ ନାମ ବହିବ ବିରଜା ଦେଶେ ତ
ମୋହର ଅଂଶରୁ ଅଂଶ ଅଣଙ୍ଗରୁ ଜାତ
ନାମ ନାହିଁ ଅନାମରେ ନାମ ମୋ ଅଚ୍ୟୁତ ।।'

—୧୭ଶ ପଟଳ

ଗୁରୁଭକ୍ତି ଗୀତାର ଏହି ଦ୍ୱିତୀୟ ଖଣ୍ଡରେ ପ୍ରଶ୍ନୋତ୍ତର ଛଳରେ ଯେଉଁ ବିଷୟମାନ ବର୍ଣ୍ଣିତ ହୋଇଅଛି, ସେ ପ୍ରସଙ୍ଗରେ ସୁବିସ୍ତୃତ ଆଲୋଚନା କରିବାକୁ ବର୍ତ୍ତମାନ ଏ କ୍ଷେତ୍ର ପ୍ରଶସ୍ତ ନୁହେଁ । ପୂର୍ବରୁ କଥିତ ହୋଇଅଛି ଯେ, ଗ୍ରନ୍ଥଟି ୧୮ ଗୋଟି ପଟଳ ବା ଅଧ୍ୟାୟରେ ଶୃଙ୍ଖଳିତ । ସେଥି ମଧ୍ୟରୁ ପ୍ରଥମ ପଟଳରେ କର୍ମବିଧି କଥନ, ଦ୍ୱିତୀୟ ପଟଳରେ ଧ୍ୟାନବିଧି କଥନ, ତୃତୀୟ ପଟଳରେ ପୂଜା-ବିଧି କଥନ, ଚତୁର୍ଥ ପଟଳରେ ତିଳକବିଧି ନିର୍ଣ୍ଣୟ, ପଞ୍ଚମ ପଟଳରେ ମାଳା ନିର୍ଣ୍ଣୟ ଓ ଭଜନ ବିଧି, ଷଷ୍ଠ ପଟଳରେ ମାଳା ସଙ୍ଖ୍ୟା ନିରୂପଣ, ସପ୍ତମ ପଟଳରେ ଧ୍ୟାନ ଯୋଗ କଥନ, ଅଷ୍ଟମ ପଟଳରେ ବ୍ରହ୍ମାରୂପ କଥନ, ନବମ ପଟଳରେ ଜ୍ୟୋତିବିଧି କଥନ, ଦଶମ ପଟଳରେ କଳିବିଧି ବ୍ୟବହାର କଥନ, ଏକାଦଶ ପଟଳରେ ନିର୍ଗୁଣ ସଂବାଦ ଯୋଗ କଥନ, ଦ୍ୱାଦଶ ପଟଳରେ ଅନାଦି ମନ୍ତ୍ର ତତ୍ତ୍ୱଭେଦ ନିର୍ଣ୍ଣୟ, ତ୍ରୟୋଦଶ ପଟଳରେ ତନ୍ତ୍ରଭେଦ ଓ ବଂଶାନୁ-ଚରିତ କଥନ ଚତୁର୍ଦ୍ଦଶ ପଟଳରେ ମନ୍ତ୍ରାଦି ମହୋତ୍ସବ ବିଧି କଥନ, ପଞ୍ଚଦଶ ପଟଳରେ ମନ୍ତ୍ରଭେଦ କଥନ, ଷୋଡ଼ଶ ପଟଳରେ ଗୁରୁଶିଷ୍ୟ ବୋଧନ, ସପ୍ତଦଶ ପଟଳରେ ଯୁଗବଂଶାନୁ ଚରିତ ଓ ଲୀଳା ବର୍ଣ୍ଣନ ଏବଂ ଅଷ୍ଟାଦଶ ପଟଳରେ ପୂଜାବିଧି ନିର୍ଣ୍ଣୟ ବର୍ଣ୍ଣିତ ହୋଇଅଛି । ଗ୍ରନ୍ଥୋକ୍ତ ତତ୍ତ୍ୱର ବିସ୍ତୃତ ଏବଂ ସ୍ଥାନ ମାନଙ୍କର ଆଧୁନିକ ନାମ ଓ ଅବସ୍ଥିତି ବିଷୟ ସମୁଦାୟ ଗ୍ରନ୍ଥର ପ୍ରକାଶ ପରେ ସୁବିସ୍ତୃତ ଭାବେ ଲିଖିତ ହେବ । ଇତି ।

ଡଃ ଆର୍ତ୍ତବଲ୍ଲଭ ମହାନ୍ତି, ଏମ. ଏ.

—※※—

ଓଁ

# ଶ୍ରୀଗୁରୁଭକ୍ତିଗୀତା

## ଦ୍ୱିତୀୟଖଣ୍ଡ

### ପ୍ରଥମ ପଟଳ

ଶ୍ରୀ ଗଣେଶାୟ ନମଃ । ଅବିଘ୍ନମସ୍ତୁ ।

କହୁଅଛୁ ଅଚ୍ୟୁତ ତୁ ଶୁଣ ଗୋପସୁତ ।
ରାମଚନ୍ଦ୍ର ଦାସ ତୁଲେ ବାର ଗୋପାଳ ତ ॥
ବରଣ କରଣ ଆଣ କୁଣ୍ଡ୍ରବଳଦାକୁ ।
ଯାଇବର ବୋଲି ଦେଣ ଏହୁ ଯେ ଗ୍ରାମକୁ ॥
ଆଜ୍ଞା ପାଇଁ ରାମଚନ୍ଦ୍ର ସଦୁଦାସ ରାଇ ।
ଆଜ୍ଞା ପରମାଣେ ଯାଅ ସାରଦା ଦେଶଇ ॥
ରାହାସ ଗୋପାଳ ତୁମ୍ଭେ ଅଣିମ ସେ ସ୍ଥାନ ।
ଶ୍ରୀକୃଷ୍ଣର ଯାତ୍ରା ତହିଁ ହେବ ପ[illegible]ଦନ ॥
ଶ୍ରୀଗୁରୁ ପରମଗୁରୁ ଆଜ୍ଞା ଘେନ ଚଳ ।
ସାରଦା ମଣ୍ଡଳେ ବାର ଗୋପାଳ ଯେ ମିଳ ॥
କହିଲେ ଗୁରୁଙ୍କ ଆଜ୍ଞା ତୁମ୍ଭଙ୍କ ବରଣ ।
କୁଣ୍ଡଗ୍ରାମେ ଯିବା ସାଜ ତୁମ୍ଭେ ସପରଣ ॥
ହରିଆନ ପବନ ଯେ ମୁକୁନ୍ଦ ଅନନ୍ତହିଁ ।
ବସ୍ତ୍ର ଯେ ମାଧବ ଆନନ୍ଦ ବାଳକ ତହିଁ ॥

ମଧୁ ଯେ ମଥୁରା ଏତେ ଜନଙ୍କୁ କହିଲେ ।
ପୀତାମ୍ବରପୁରେ ଯାଇଁ ପ୍ରବେଶ ହୋଇଲେ ॥
ଭୃଥଦେବ ବିଷ୍ଣୁଦେବ ସୁଦାମ ଗୋବିନ୍ଦ ।
ଆଜ୍ଞା ଦେଇଛନ୍ତି ମୋତେ ଶ୍ରୀ ଅଚ୍ୟୁତାନନ୍ଦ ॥
ତହୁଁ ଚଳି ବନଦାସ ଧର୍ମଦାସ କହୁ ।
ଦଶମୀ ବୈଶାଖମାସେ ମିଳିବେ ସେ ଯାଇଁ ॥

ଯଦୁଦାସ ଭାଷା ଘେନ ଦଶମୀ ଦିନରେ ।
ପ୍ରବେଶ ହୋଇଲେ ଯାଇଁ ଆନନ୍ଦ ମନରେ ॥
ପାଞ୍ଚଦିନ ରଙ୍ଗ ରସ ଆନନ୍ଦ ରହସ ।
ରାସ ସାନ୍ଧ ପ୍ରବେଶ ଭଜନ କୁଦ ଦେଶ ॥

ନୀଳଗିରି କୁଦେ ଦିନେ କଲେକ ରହଣି ।
ଆନନ୍ଦ ରହସେ ତହିଁ ପୁହାଇ ରଜନୀ ॥
ପ୍ରାତକାଳେ ସର୍ବେ ସ୍ନାନ କଲେକ ଯତନେ ।
ସୂର୍ଯ୍ୟଙ୍କୁ ଜଳ ଦେଇଣ ସ୍ତୁତିବାକ୍ୟ ମନେ ॥
କେହୁ ବୋଲଇ ସୂର୍ଯ୍ୟ ତ ବ୍ରହ୍ମାଣ୍ଡଧାରଣ ।
ପୃଥିବୀ ରକ୍ଷଣହିଁ ତ ତୁମ୍ଭ ଜ୍ୟୋତି ପୁଣ । ୧୫ ।

ଋଷି ବିପ୍ର ବଇଷ୍ଣବ ତୁମ୍ଭଙ୍କୁ ବୃହିଣ ।
ଜଳେ ସ୍ନାନ ହେଉଚରେ ହୁଅନ୍ତି କାରଣ ॥
ସ୍ନାନ ସାରି କୂଳେ ବସି କମଳଆସନେ ।
ପୂର୍ବମୁଖେ ବସି କଲେ ଭଜନ ଯତନେ ॥
କୃଷ୍ଣରୂପ ଲୟ କରି ବସିଲେ ଆସନେ ।
ସୁମରଣ ମନ୍ତ୍ର ଧ୍ୟାନ ହୃଦରେ ଯତନେ ॥

ଚରଣ ଗୋପାଳ ଦଣ୍ଡବତ ଅଷ୍ଟାଙ୍ଗରେ ।
ପଞ୍ଚାଙ୍ଗକୃତ ଅଞ୍ଜଳି ପ୍ରଣିପାତ୍ୟ କରେ ॥
ରାହାସ ଗୋପାଳ ଯେ ଉତ୍ଥାନ ପଚାରିଲେ ।
ସ୍ନାହାନ ଭୋଜନ ଆଜ୍ଞା ହୋଇବ ସେ ମୋରେ ॥

ଶ୍ରୀମୁଖରୁ ଶୁଣିଲେ ହଣୁମନ୍ତ ଆମ୍ଭ ଶିବ ।
ବାରଗୋଟି ଦାସ ମନ୍ତ୍ରୁଁ ବଡ଼ୋର ନ ଶିବ ॥
ତୁମ୍ଭ ଆଜ୍ଞା ଘେନ ଆମ୍ଭେ ସର୍ବଠାରେ ଥିବୁ ।
ଜନମାନେ ପଚାରିଲେ ତାଙ୍କୁ ବୁଝାଇବୁ ॥
ଶୁଣ ହୋ ହନୁମାନ ଦାସ ସ୍ନାହାନ ବିଧାନ ।
କାକ ରବ ଦଅନ୍ତେଣ ଉଠିବ ବହନ ॥

ପଥ ଚାଲିବାକୁ ମନ୍ତ୍ର ଗୋଟିଏ ଭଜିବ ।
ଜଳ ପଞ୍ଚସ୍ରାବ ଦୂର ମନ୍ତ୍ର ସୁମରିବ ॥
ଜଳେ ମୁଖ ପ୍ରକ୍ଷାଳଣ ମୃତ୍ତିକା ହସ୍ତରେ ।
ତିନିବାର ସପ୍ତବାର ମୃତ୍ତିକା ବିଧିରେ ॥

ତେବେ ମନଦୋଷ ହରେ ଶୁଣ ହୋ ହନୁମାନ ।
ଏମନ୍ତ ବିଧିରେ କରୁଥିବ ନ[illegible]ଦନ ।
ଉତ୍ତରଦିଗକୁ ମୁଖ କରିବ ପ୍ରଭାତେ ।
ଡାହାଣ ଦିଗକୁ ସୂର୍ଯ୍ୟ ଉଦ୍ଭବ ଯେମନ୍ତେ ॥
ସୂର୍ଯ୍ୟଙ୍କୁ ସମ୍ମୁଖ କରି ବୋଲିଲେଣ ବର୍ଷ ।
ବଇଷ୍ଣବ ବିପ୍ରଜନ ଅଂଶ ଯେତେ ଋଷି ॥

ଅଣ୍ଡ ଯେ ଉଦୟ ଯେବେ ସୂର୍ଯ୍ୟ ହୋଇଥିବ ।
ପୂର୍ବଦିଗେ ମୁଖକରି ଦନ୍ତ ଯେ ଘଷିବ ॥
ଉଦୟ ହୋଇଲେ ମୁଖ ଉତ୍ତରକୁ କରି ।
ଦକ୍ଷିଣେ ପଶ୍ଚିମେ ମୁଖ କେବେହେଁ ନ କରି ॥
ଆମ୍ରପତ୍ର ନ ତୋଳିବ ପଡ଼ିଲେ ଘଷିବ ।
ଅପମାର୍ଗ, କୁମ୍ଭାରୁଆ, ଦରଓଳ, ଲିମ୍ବ ॥

କରଞ୍ଜ ଯେ ଉଦୁମ୍ବର ଏ ଶୁଦ୍ଧ ଅଟଇ ।
ଯେ ଯାହାକୁ ରୁଚିବ ଯେ ଘଷିଥିବ ନେଇ ॥
ଜଳେ ପଶି ସ୍ନାହାନ କରିବ ସୂର୍ଯ୍ୟ ଉର୍ଦ୍ଧେ ।
ଅନନ୍ତ ମୂରତି ରୂପ ଜଳେ ପ୍ରକାଶଇ ॥

ନାରାୟଣ ମୂରତି ସେ ଜଳେ ସୁମରନ୍ତି ।
ପୂର୍ବେ ହୁଦେ ବ୍ରାହ୍ମଣ ଯେ ପଣ୍ଡିମକୁ ଯାନ୍ତି ॥
ଏଣୁ କରି ଜଳେ ପଶି କରିବ ସ୍ନାହ୍ମାନ ।
ସେ ରୂପକୁ ସ୍ମରି ତାଙ୍କୁ କରିବ ସ୍ମରଣ
ମାନସିକ ଭାବେ ତାଙ୍କୁ ସ୍ନାହ୍ମାନ କରାଇ ।
ତାଙ୍କ ଗୁଣମାନ ସୁମରିବ ଜଳେ ଥାଇ ॥
ତାଙ୍କ ରୂପ ଧ୍ୟାଇ ଯେଉଁମାନଙ୍କ ଭଜନ ।
ଚନ୍ଦ୍ର ସୂର୍ଯ୍ୟ ଥିବାଯାଏ ତାଙ୍କ ପାଦେ ଲୀନ ॥
ଏଣୁକରି ହୁଦେ ସନ୍ଧ୍ୟା ବୈଷ୍ଣବର ଦୃଢ଼ ।
ନ ପାରନ୍ତି ଗୃହୀଜନେ ବିଷୟଙ୍କ ଝଗଡ଼ ॥
ଶୁଣ ହୋ ହନୁଆନ ଦାସ ଗୁରୁଭକ୍ତ ରସ ।
ଗୁରୁଭକ୍ତଗୀତା ଏ ଦ୍ୱିତୀୟ ଖଣ୍ଡ ପରକାଶ ॥
ପ୍ରଥମ ଛାନ୍ଦ ଏ କର୍ମବାର୍ଥ ହୋଇଲୁ ବନ୍ଧ ।
ବୁଝି ହେବୁ କର ବାରୁ ଅଚ୍ୟୁତ କହଇ ॥ ୪୦ ॥

ଇତି ଶ୍ରୀ ଗୁରୁଭକ୍ତଗୀତା ଦ୍ୱିତୀୟଖଣ୍ଡେ ଶିଷ୍ୟବୋଧନେ
କର୍ମବାର୍ଥକଥନେ ନାମ ପ୍ରଥମ ପଟଳ ।



## ଦ୍ୱିତୀୟ ପଟଳ

କରପଢ଼ ଯୋଡ଼ିଣ ସେ ରାମଚନ୍ଦ୍ର କହୁ ।
ଜଳର ଝଳକଷ୍ଠି କହୁବା ବୁଝାଇ ॥

ପ୍ରଥମରେ କହୁ ଜଳ ହସ୍ତରେ ଘେନିବ ।
ଅଣାକାର ବନ୍ଦୁରେ ସେ ପିଣ୍ଡ ପକାଇବ ॥

ଅର୍ଦ୍ଧ ବନ୍ଦୁ ଉପରେ ଝଳକ ବନ୍ଦୁ ଦେଇ ।
ଅର୍ଦ୍ଧ ବନ୍ଦୁ କଣ୍ଠେ ଦଶ ଷୋଳକ୍ଷର ଥାଇ ॥

ଠବନ୍ଦୁ ଦେବ ପୁଣ ଦ୍ୱାଦଶ ଦଳରେ ।
ଜଅବନ୍ଦୁ ବସିବ ସେ ଦଶ ପଖୁଡ଼ାରେ ॥

ଲ ଅକ୍ଷର ଅର୍ଦ୍ଧ ବନ୍ଦୁ ଛଡ଼ ସେ ପାଖୁଡ଼ା ।
ସ ଅକ୍ଷର ଅର୍ଦ୍ଧ ବନ୍ଦୁ ବସିବ ସେ ପୁଡ଼ା ॥ ୫ ॥

ଅର୍ଦ୍ଧ ମାତ୍ରା ଉପରେ ସେ ଚତୁର୍ଦ୍ଦଳ ଥାଏ ।
ଛଡ଼ ବନ୍ଦୁ ବସିଅଛୁ ଲିଙ୍ଗଚକ୍ର ଦେହେ ॥

ଏଣୁକରି ସେ ବନ୍ଦୁକୁ ଝଳକେ ପୁଜିବ ।
ସଦଗୁରୁ ଦେଖାଇଲେ ଏ ଭେଦ ପାଇବ ॥

ଛଡ଼ ବନ୍ଦୁ ଉପରେ ସେ ଅଣାକାର କହୁ ।
ସେ ବନ୍ଦୁ ଚିହ୍ନିଲେ ସେ କନ୍ୟାର ଗତି ପାଇ ॥

ବନ୍ଦୁ ଭେଦ ନ ଜାଣନ୍ତି ଯେବଣ ସେ ଦାସ ।
ସଧବା ଯୁବତୀ ପ୍ରାୟେ ହୋଇଯାନ୍ତି ନାଶ ॥

ବାମରେଖା ଲଲାଟରେ ବ୍ରହ୍ମାପୁଜା ଦେଇ ।
ଦକ୍ଷିଣ ରେଖା ସେ ପୁଣ ସଦାଶିବ ହୋଇ ॥ ୧୦ ॥

କଳି ଅଟେ ଗରୁଡ଼ର ପୁଜା ଅଟେ ସେହୁ ।
ହୃଦର ମଧ୍ୟର ଏ କଙ୍କାଣ୍ଡ ପୁର ହୋଇ ॥

ନୟନର ଉପରେ ଯେ ଭ୍ରୂଲତା ମଧ୍ୟରେ ।
ତ୍ରିକୂଟ ସନ୍ଧିରେ ହ୍ରଶ ବନସ୍ଥ ସେଠାରେ ॥
ଜ୍ୟୋତିରୂପ ସେଠାବରେ ଅଛି ବିନ୍ଦୁ କହୁ ।
ଏହା ଚିହ୍ନି ଯେନଲେ ତଳକ ଗତି ପାଇ ॥

ଗୁରୁଙ୍କ ଭଣ୍ଡାର ଏହୁ ଗୁପତ ଅଟଇ ।
ଦୃଢ଼ଭକ୍ତ ଶିଷ୍ୟ ହେଲେ ଗୁରୁ ଦିଅନ୍ତି କହୁ ॥
ଶୁଣ ଆହେ ତେର ଦାସ ଗ୍ରପର ମଣ୍ଡଳୀ ।
ପୂର୍ବଜନ୍ମେ ଭାଗ୍ୟ ଥିଲେ ଏହୁ ଗୁରୁ ମିଳି । ୧୫ ।

ଅଣ୍ଡ ବୋଲି ପ୍ରାଣିମାନେ ହେଉଥାନ୍ତି ଦାସ ।
ଆତ୍ମାର ଭିତରୁ ତଳେ ନ ନାଶନ୍ତି ଲେଶ ॥
ଆତ୍ମା ଭେଦ ଜାଣିଲେଟି ପ୍ରାଣୀ ଗତି ପାଇ ।
ଆତ୍ମା ନ ଭେଟିଲେ ଘୃଣଖାଣ ଭ୍ରମୁଥାଇ ॥
ବାହାର ଭିତର ତୁମ୍ଭେ ବୁଝ ମନ ଦେଇ ।
କହିବ ତୁମ୍ଭେ ଶିଷ୍ୟରେ ଏ ଭେଦ ବୁଝାଇ ॥

ଅଂଶା ଅଂଶ ଯେଉଁମାନେ ପୂର୍ବାଭାଗ୍ୟେ ଥିବ ।
ଏ ଗୁରୁ ମିଳିଲେ ତାଙ୍କ ସଂଶୟ ଫିଟିବ ॥
ଅଚ୍ୟୁତର ଶିଷ୍ୟ ରାମ ରାମଶିଷ୍ୟ ବାର ।
ବାର ମଧ୍ୟେ ଗୁରୁ ଅଟେ ଭ୍ରଥର କୁମର । ୨୦ ।

ଏହୁ ବାରଜଣଙ୍କେଣେ ବ୍ରହ୍ମାଣ୍ଡ ଉତ୍ପନ୍ନ ।
ସ୍ଥାନେ ସ୍ଥାନେ ଦେବି ପୁଣି ରହାସ ରଞ୍ଜନ ॥
ଶ୍ରୀକୃଷ୍ଣ ଚୈତନ୍ୟଙ୍କର କରୁଣା ତୁମ୍ଭରେ ।
ଗୋଲୋକ ଆୟୁଧ ଲୀଳା ଧରିଲେ ହସ୍ତରେ ॥

ହରିନାମ ଅସ୍ତ୍ରେ କରି ସଂସାରରେ ଥିବ ।
ତଳକଭେଦ ଜାଣିଲ ସଂସାରୁ ତରିବ ॥
ମୁକୁନ୍ଦ, ଅନନ୍ତ, ବଳି, ସୁଦାମ, ଆନନ୍ଦ ।
ଗୋବିନ୍ଦ, ବାଲକ, ମଧୁ, ମଧୁସ୍ୱୀ ସେ ବୃନ୍ଦ ॥

ଚଉରେ ସନ୍ତୋଷ ହୋଇ ସାଷ୍ଟାଙ୍ଗେ ପ୍ରଣାମ ।
ଆମ୍ଭେମାନେ ହୋଇଅଛୁଁ ଅତି ଯେ ଅଧମ । ୨୫ ।
ପ୍ରେମଭରେ ଅଶ୍ରୁଧାରେ କଲେ ଆଲିଙ୍ଗନ ।
ତୁମ୍ଭ ଅମ୍ଭ ଅଙ୍ଗ ପୁଣ ନୋହେ ଭିନ୍ନାଭିନ୍ନ ॥
ଠାକୁର ଆଜ୍ଞାରେ ଅମ୍ଭେ ଆସନେ ବସିବୁ ।
ତୁମ୍ଭଙ୍କୁ ସଂସାର ଦେଇ ଖେଳରେ ରସିବୁ ॥
ଦ୍ୱାପରଲୀଳା ଯେ କିଛୁ ଭିଆଣ କରିବ ।
ଆପଣେ ତରିଣ ପୁଣି ପରେ ଯେ ତାରିବ ॥
ଷୋଳସହସ୍ର ଗୋପାଳ ଯେ ଅମ୍ଭର ସେ ଗଣ ।
ମଲ୍ଲିକ ଅନନ୍ତ ଶ୍ରେଷ୍ଠ ଅଚ୍ୟୁତ ଯେ ପୁଣ ॥
ବ୍ରଜସ୍ଥାନଗତ ଗୁଡ଼ି ରାହାସେ ମଜ୍ଜିଲ ।
ବାଳକ ଯେ ପୁତବଧୂ ମନକୁ ରଞ୍ଜିଲ ॥ ୩୦ ॥
ସାଧୁ ସନ୍ଥ ବୈଷ୍ଣବମାନଙ୍କୁ ଉତ୍ତମ ।
ରାହାସଲୀଳା ହୋଇବ ଗ୍ରାମ ମଠମାନ ॥
ଆବର ଛଡ଼ ଗୋପାଳେ ତୁମ୍ଭ ସଙ୍ଗେ ପଡ଼ି ।
ରାହାସଲୀଳା କରିବେ ତୁମ୍ଭ ଶିକ୍ଷା କରି ॥
ରାହାସ ଦାସର ଗୁରୁ ତୁମ୍ଭେ ଦାରକଣ ।
ତାହାଙ୍କୁ କହିବ ଏହୁ ଉଲଙ୍କ ପ୍ରମାଣ ॥
ଏହୁ ଗୁରୁଭକ୍ତି ଗୀତା ଦ୍ୱିତୀୟ ଖଣ୍ଡରେ ।
କର୍ମ ବଧ କହିଲ ଯେ ତୁମ୍ଭର ହିତରେ ॥
ବ୍ରଜସ୍ଥା ସଂସାରେ ଜନ୍ମହୋଇ ତୁମ୍ଭେ ପୁଣ ।
ପୂର୍ବହେତୁ ପ ଯୋଡ଼ିଲ ଦେହକୁ ବହୁଣ । ୩୫ ।
ଅମ୍ଭହେତୁ ପ୍ରସରିଲ ଶ୍ରୀକୃଷ୍ଣ କରୁଣା ।
ତୁମ୍ଭହେତୁ ପ୍ରସରିଲ ପୂର୍ବର ବାସନା ॥

---

ଜନ୍ମେ ଜନ୍ମେ ତୁମ୍ଭେମାନେ ସହାସର ଜନ ।
ଅଚ୍ୟୁତ ବଚନ ତୁମ୍ଭେ ହେତୁ କର ଘେନ । ୩୭ ।

ଇତି ଶ୍ରୀଗୁରୁଭକ୍ତ ଗୀତାୟାଂ ଗୁରୁଶିଷ୍ୟବୋଧନେ
ସ୍ନାନବନ୍ଧକଥନେ ନାମ ଦ୍ୱିତୀୟପଟଳ ।

———

# ତୃତୀୟ ପଟଳ

କର ଯୋଡ଼ି ପଚ୍ଛରନ୍ତି ବସୁ ଯେ ପବନ ।
ଗୋବିନ୍ଦ ଆନନ୍ଦ ହୋଇ ପଚ୍ଛରଇ ପୁଣ ॥
ତ୍ରିସନ୍ଧ୍ୟା କେମନ୍ତ ଗୁରୁ କହିବା ବୁଝାଇ ।
କିପାଁ କରୁଥାନ୍ତି ପ୍ରାଣୀମାନେ ଏହା ଧ୍ୟାଇ ॥
ନ କଲେଣ କିସ ହୋଏ କଲେ କିସ ଫଳ ।
ଏଥର ସନ୍ଦେଶ ଶୁଣ ଦ୍ୱାଦଶ ଗୋପାଳ ॥
ତ୍ରିସନ୍ଧ୍ୟାରେ ସୁମରଣ କରନ୍ତି ଯେ ଜନ ।
ସପ୍ତପୁରୁଷ ଉଦ୍ଧାରନ୍ତି କୃଷ୍ଣ ଭଜି ପୁଣ ॥
ଶୁଣ ଆହେ ଗୋପସୁତ ପ୍ରାତ ସ୍ନାନକଥା ।
ଶୁଣସି ହେ ଏ ତନ୍ତ୍ରର ଯେମନ୍ତ ବ୍ୟବସ୍ଥା । ୫ ।
ମଧ୍ୟ ସନ୍ଧ୍ୟା କହିବି ଏବେ ତୁମ୍ଭେ ଶୁଣ ।
ଯେମନ୍ତେ କରିବ ହେତୁ ତୁମ୍ଭର ଦୁରଦେଣ ॥
ପ୍ରାତକାଳେ ପୂର୍ବକୁ ଯେ ପ୍ରହରେ ଭଜନ ।
କହୁଁ ଯେ ହଠି କରିବ ଯେଖେଇ ବିଧାନ ॥
ଦଶଘଡ଼ି ବେଳେଇ ଯେ କରଣ ସାରେବ ।
ଦ୍ୱିତୀୟ ପ୍ରହରେ ସ୍ନାନ ପୁଣି ଯେ କରିବ ॥
ପୁଣ ପୂର୍ବମୁଖ ହୋଇ ମନ୍ତ୍ରକୁ ସୁମର ।
ଦ୍ୱିତୀୟ ସନ୍ଧ୍ୟା ସାରିଲେ ସେ ଦଗେ ନ କର ॥
ଦୁଇଘଡ଼ି ସ୍ତୋତ୍ରର ଜପ ଯେ କରିବ ।
ଛଅଘଡ଼ି ଶୟନରବଧି ଯେ ସାରିବ । ୧୦ ।
ପୁଣ ଦୁଇ ଘଡ଼ିଠାରୁ କର୍ମବିଧି ସାରି ।
ସ୍ନାହାନ କରିବ ଯେ ପଶ୍ଚିମମୁଖ କରି ॥
ଧ୍ୟାନକର ପୂଜାବିଧି ସେ ଦଗେ କରିବ ।
ସୂର୍ଯ୍ୟମୁଖ ହୋଇଣ ଯେ ସ୍ନାହା ନ ସାରିବ ॥

ନିତ୍ୟବାର ସ୍ନାନ୍ଦାନ ଯେ ଗୋପାଳର ବ୍ୟଧି ।
ଅମେଧ ଗୃହରେ ନ କରିବ ଅନ୍ନସିଦ୍ଧି ॥
ନୂଆପାକ କରି ହସ୍ତେ କରିବ ଭୋଜନ ।
ଖୋଳ କରତାଳ ବନ୍ଧିଥିବ ଯେତେ ଜନ ॥

ଶ୍ରୀ ବୃନ୍ଦାବନଲୀଳା ଶ୍ରୀକୃଷ୍ଣଙ୍କର ବେଶ ।
ଗୁଞ୍ଜ ଗୁଞ୍ଜ ତରୁପ ତ ଚୂଳ ମାଳ ବେଶ । ୧୫ ।

ଖୋଳ କରତାଳ ଶିଂଘା ବେଣୁ ଯେ ବଇଁଶୀ ।
ଏମାନ ବନ୍ଧଣ ଥିବ ସଦା ଜନ ବସି ॥
ଏଣୁକରି ଅଶୁଚି ଯେ ଅଙ୍ଗ ନ କରିବ ।
ଶୁଚିବନ୍ତ ହୋଇକରି ସଦାବେଳେ ଥିବ ॥

ପୂର୍ବଲୋକ ବର୍ଣ୍ଣପ୍ରାଏ ତାର ଘଟ ରହୁ ।
ଶୁଚିବନ୍ତ ଘଟ ପୁଣ ନୂଆପରି ଆଇ ॥

ଶୁଦ୍ଧ ଅନ୍ନ ନ ଭକ୍ଷ ଛୁଟକ ଅନ୍ନମାନ ।
ଉପାସନା ନଇବେଦ୍ୟ ନ କରିବ ଭିନ୍ନ ॥

ଶ୍ରାଦ୍ଧଅନ୍ନ ନ ଭକ୍ଷି ପତିତ ଘରଅନ୍ନ ।
କୃଷ୍ଣଉପାସନା ନାହିଁ ପତିତ ଯେ ଜନ । ୨୦ ।

ରାଜଝଣ୍ଡା ଅନ୍ନମାନ ନ କର ଭୋଜନ ॥
ଶମ୍ଭୁ ଅନ୍ନ ବୈଷ୍ଣବଜନେ ନଷେଧନ୍ତି ଜାଣ ॥
ରାଜା ସମର୍ପଣକୁ କଲ୍ୟାଣ ହୋଇଥାଇ ।
ବୈଷ୍ଣବଙ୍କୁ ଯେ ସମର୍ପଣ କରିବା ନୋହଇ ॥

ଆମିଷ ମାଂସ ଯେଉଁ ଘରେ ରନ୍ଧାହୋଇ ।
ବ୍ରଜବାସୀ ବଇଷ୍ଣବ ସେ ପାକ ନ ଛୁଇଁ ॥
ପତିତନ୍ତି ଜାଣ ବାବୁ ଯେତ୍ତୁ ପାକମାନ ।
କୃଷ୍ଣରସ ନ ଜାଣେ ଯେ ପଣ୍ଡିତରେ ଗଣ ॥

---

୧୫— ।:— ଗରଗଡ଼ ଚୂଳ ଯେ ତରୁପ — ଗ ।

ଛୁତକ ଘର ଅମେଧ ଅନ୍ନ ତା ନ ଛୁଇଁ ।
ଦଶମ ଦିବସେ ଗୃହଶୁଦ୍ଧି ତାର ହୋଇ । ୨୫ ।

ଶ୍ରାଦ୍ଧଅନ୍ନ ପିତୃଗଣେ କଲ୍ପ୍ୟ ଥାନ୍ତି ପୁଣ ।
ସଦ୍ବ'ସଲ୍ଲାଳା କରିବ ଏବିଧି ଦେଖିଣ ॥
କୃଷ୍ଣଯୋଗ୍ୟ ନୋହଇ ସେହୁ ଅନ୍ନମାନ ।
ବ୍ରଜ ବଇଷ୍ଣବମାନେ ତେଜିବଟି ପୁଣ ॥
ସଂସାରର ଜନମାନେ ବାଦୀ ସେ ଅଟନ୍ତି ।
ଧର୍ମଜିବ ସାଧୁମାନେ ସେହୁ ଠାବରୁଟି ॥

ଦ୍ୱାଦଶ ଗଜ ଅନ୍ତରେ ସେଠାରେ ଭୁଞ୍ଜିବ ।
ନବତନ ବସ୍ତ୍ର ପାକ ହାଣ୍ଡି ସେ କରିବ ॥
ବାଦୀମାନେ ସଂସାରେ ବନ୍ଧୁତ ଛନ୍ତି ଜାଣ ।
ଅକର୍ମ ଜନମାନେଟି କର୍ମର ବନ୍ଧନ । ୩୦ ।

କୃଷ୍ଣଙ୍କ ନିଷେଧ ଯେ ବୈଷ୍ଣବ ସର୍ବ ଜନ ।
ଏଗାର ଦିବସ ଯାଏ ନ କରେ ଭୋଜନ ॥
ଅକର୍ମ୍ମର ଗନ୍ଧ ଜିହ୍ୱା ଲାଳସା କରଇ ।
କର୍ମ୍ମମାନ ଜାଣିକରି ମୁକାର ବହଇ ।
ବ୍ରଜନୀତ କର୍ମ୍ମମାନ ତୁମ୍ଭେ କରୁଥିବ ।
ଗୋପାଳମୂରତି-କଳା ହୃଦରେ ଧରିବ ॥
ନ୍ୟୋତିଗନନ୍ଦ ମୂରତି ନିକୁଟେ ବସାଇ ।
ନିତି ଭୋଗ ଦେଉଥିବ ସେ ସ୍ଥାନକୁ ଯାଇଁ ॥
ଗୋପାଳ ମନ୍ତ୍ରକୁ ପାଞ୍ଚଭାଗ ଯେ କରିବ ।
ପଞ୍ଚ ଯେ ମୂରତି ଏହି ଭାବରେ ପୂଜିବ । ୩୫ ।

ଜନ ବଳଭଦ୍ର ଦୂତୀ ତ୍ରିପୁର ସୁନ୍ଦରୀ ।
ଗୋପୀ ଗୋବିନ୍ଦାସ୍ୟ ବଲ୍ଲଭସ୍ୟ ପୂଜା କରି ॥
କୃଷ୍ଣାୟ କୃଷ୍ଣ ପଜିବ ଏପଞ୍ଚ ବିଧିରେ ।
ତ୍ରିପୁର ପୂଜିଲେ ଗୋପୀ ଥାନ୍ତି ତାଙ୍କଠାରେ ॥

ଯଥା କୃଷ୍ଣଙ୍କ ମହତ ସବ୍ବଜେ ବିଖ୍ୟାତ ।
ଏକ ଅଙ୍ଗ ପଞ୍ଚମୂର୍ତ୍ତି ଲୀଳାର ନିମିତ୍ତ ॥
ଶୁଣ ଆହେ ଗୋପସୁତ ଅଚ୍ୟୁତ ବଚନ ।
ଏହୁ ଗୁରୁଭକ୍ତି ଗୀତ ଦ୍ୱିତୀୟ ଖଣ୍ଡେଣ ॥
ପୂର୍ବ ଜନ୍ମ ଭାଗ୍ୟଥିଲେ ବିଷ୍ଣୁ ବ୍ରତ କରେ ।
ବିଷ୍ଣୁଙ୍କ ସ୍ମରଣେ ଭବ-ଭୟ ହରେ । ୪୦ ।

ଇତି ଶ୍ରୀ ଗୁରୁଭକ୍ତିଗୀତାୟାଂ ଦ୍ୱିତୀୟଖଣ୍ଡେ ଗୁରୁଶିଷ୍ୟସମ୍ବୋଧନେ
ପୂଜା ବିଧି ବିଧାନକଥନେ ନାମ ତୃତୀୟପଟଳ ।

— ❋ —

# ଚତୁର୍ଥ ପଟଳ

ବନ୍ଧ ବିଷ୍ଣୁ ଦେକ୍ଷିଣ ଯେ ପଶ୍ଚିମନ୍ତ ପୂର୍ଣ ।
ଉଲକର ଥୋକେ ପ୍ରଭୁ ନୋହିଲ ପ୍ରମାଣ ॥
ଏ ଦୁଇ କର୍ମ୍ମ ଗ୍ରହଣ ଅନ୍ୟ କର୍ମ୍ମ କରେ ।
କନିଷ୍ଠ ଗୋପାଳ ବୋଲି କହନ୍ତି ତାହାରେ ॥
ଉତ୍ତମ ମଧ୍ୟମ ଯେ କନିଷ୍ଠ ତିନି ମତ ।
ଜାତିମାନଙ୍କରେ ପ୍ରାଣୀ ଅଛନ୍ତି ଏମନ୍ତ ॥
ଏଣୁକରି ତୁମ୍ଭେମାନେ କୁଳ ସେ ତାରିବ ।
କଳିଯୁଗରେ ତୁମ୍ଭର କୀରତି ରହିବ ॥
ମଧ୍ୟମ କନିଷ୍ଠ କୁଳେ ଗ୍ରାମ ଭୃଥ ସାର ।
ବିଷ୍ଣୁ ଧର୍ମ୍ମ ବନ୍ଧ ପଞ୍ଚଜନେ ମୋର ସାର । ୫ ।
କମାର ଯେ ଗ୍ରାମଦାସ କୁମ୍ଭାର ଯେ ଗ୍ରାମ ।
ନନ୍ଦ କନ୍ଦ ମୁସ୍ୱର ଅଟନ୍ତି ତିନିଜଣ ॥
ନିରଞ୍ଜନ ବେହେରା ଦକ୍ଷିଣ ଚନ୍ଦ୍ର ଦୁଇ ।
କନିଷ୍ଠ ମଧ୍ୟମ ତାର ବାରଜଣ ଶ୍ୱଇ ॥
ବିଭା ବନ୍ଧାପନା ଯେ ଅଶୌଚ କର୍ମ୍ମମାନ ॥
ଧର୍ମ୍ମପଥମାନ କରି କଟନ୍ତି ସ୍ଥାପନ ।
ସତ ଯତ ଦୟା ଶାନ୍ତି ମନ୍ତ୍ର ଯନ୍ତ୍ରମାନ ।
ଗୁମ୍ଫା ଯେ ଅବାନ୍ତ ଜ୍ୟୋତି ସମାଧି ସାଧନ ॥
ଏ ସାଧନମାନ ତୁମ୍ଭେ ନିତ୍ୟେ କରୁଥିବ ।
ଆପଣେ ତରିବ ତୁମ୍ଭେ ପରେ ନିସ୍ତାରିବ । ୧୦ ।

ଏ ଭେଦ ଜାଣି ଉତ୍ତମ ମଧ୍ୟମ ଯେ କରେ ।
ଗ୍ରହଣ କଲେଣ ପାପ ଲାଗିବ ତୁମ୍ଭରେ ॥

---

୧୦—୧ :—ଅଙ୍ଗେ କରୁଥିବ—ଘ

ରୋଗ ଶୋକ ଦାରିଦ୍ର୍ୟ ଗୃହରେ ହେବ ଜାତ ।
ଏଣୁକର ଶାନ୍ତ ରୂପ ଧର ଗୋପସୁତ ॥
ଖୋଳ ଯେ କର୍ତ୍ତାଳ ଶିଙ୍ଗା ବେଣୁ ଯେ ବଇଂଶୀ ।
ଗୁଞ୍ଜ ଗୁଞ୍ଜ ଗରଚଢ଼ ଚୂଳ ହାସ ମିଶି ॥

ଶଙ୍ଖ ବୀଣା ଖଞ୍ଜଣି ପଖାଉଜ ମୟୂର ।
ଏମାନ ବହ୍ନଣ ତୁମ୍ଭେ ଶ୍ରେଷ୍ଠ ଗୋପ ଢେର ॥
ମୁକୁନ୍ଦ ଅନନ୍ତ ବସ୍ତ୍ର ପବନ ସୁଦାମ ।
ଯାଦବ ବାଳକ ମଧୁ ମଥୁରା ଉତ୍‌ଥାନ । ୧୬ ।

ଗୋବିନ୍ଦ ଯେ ବୃନ୍ଦାବନ ବାରସୁତ ଶୁଣ ।
ଉତ୍ତମ ଗୋପାଳ ତୁମ୍ଭେ ମୂଳେ ଥିବ ପୁଣ ॥
ଫୁଲ ପାନ ବସନ ଚନ୍ଦନ ଦୃଢ଼ ମନ ।
ଏମନ୍ତ ପୂଜା ଦେଖିବ ଯେବଣ ଭୁବନ ॥
ଏହା ଦେଖିଲେ ଯେ ପୁଣ ଗ୍ରହାସ ରହିବ ।
ଅଣବେଷ ଜନଠାରେ କେବେଁ ନ ବସିବ ॥
ଭୁଞ୍ଜିବ ଯେ ନୂଆପାକେ ହସ୍ତରେ ଗ୍ରହଣ ।
ଦ୍ୱାଦଶ ଗୋପାଳେ ଭୋଗ ଦେବ ବାର ସ୍ଥାନ ॥
ଶଙ୍ଖର ଶବନ୍ଧ ଦେବ ମଧୁଦାସ ମୂଳେ ।

ବାଳକ ରନ୍ଧନ ପାକ କରଣି କୁଶଳେ ॥
ସଖୀ ଅଙ୍ଗ ସେବା ରଖ ମୁକୁନ୍ଦ ଅନନ୍ତ ।
ରାଧା ସେବା ମୁକୁନ୍ଦ ଦୂତୀସେବା ଅନନ୍ତ ॥
କୃଷ୍ଣସେବା ପବନ କରିବେ ମନ ଦେଇ ।
ଉତ୍‌ଥାନ ମୃଦଙ୍ଗ ସେ ଉଛୁଳିବ ମସ୍ତି ॥

ଦୁହାର ମୃଦଙ୍ଗ ଧର ଗୋବିନ୍ଦ ହୋ ଦାସ ।
କଂସାଳ ଶିଙ୍ଗ ଧରିବ ଆନନ୍ଦ ହରଷ ॥
ଦ୍ୱିତୀୟ କଂସାଳ ରଖ ବସ୍ତ୍ର ଦାସ ମୂଳେ ।
ତୃତୀୟ କଂସାଳ ରଖ ମାଧୁସ୍ତର ମେଳେ ॥

ବୃନ୍ଦାବନ ଦାସ ମୂଳେ ପଞ୍ଚା ଯେ ବଖାଣି ।
ଏହୁ ବାର ଦାସଙ୍କର ସହାସ ଗାସୁଣି । ୨୫ ।

ଶ୍ରେଷ୍ଠ ଯେ ଗୋପାଳ ଅଟ ତୁମ୍ଭେ ବାର ଦାସ ।
ତୁମ୍ଭ କରୁଣାରୁ ସର୍ବଶ୍ରେଷ୍ଠ ହେବ ଅଂଶ ॥
ଚବିଶ ଗୋପାଳ ଶୁଣ ତିଳକ ପ୍ରମାଣ ।
ବଜ ବକ୍ଷ୍ ଦକ୍ଷିଣ ପଶ୍ଚରେ ଯାହା ପୁଣ ।

ଚବିଶ ଗୋପାଳ ଯେନ ଏହୁ ଯେ ଈଶ୍ୱର ।
ଉତ୍ତମ ମଧ୍ୟମ ଶିଷ୍ୟ ଗୁରୁ ସମାଚ୍ଚର ॥
ହୃଶ ମନ୍ଦିର ତିଳକ ସପ୍ରବନ୍ଧ କଥ
କହିବା ଏଥିର ସନ୍ଧ ଯେ ଏଥି ବ୍ୟବସ୍ଥା ॥

ହୃଦସ୍ଥ ତିଳକବନ୍ଧ କହୁଅଛୁ ଶୁଣ ।
ଦ୍ୱାଦଶ ତିଳକ ଯେହିଁ ସ୍ଥବେଶ ପ୍ରମାଣ । ୩୦ ।

କର୍ଣ୍ଣେ ସୂର୍ଯ୍ୟ ଦେବତାଙ୍କୁ ତିଳକ ଯେ ଦେଇ ।
ନୟନକୋଣ ତିଳକ ଚନ୍ଦ୍ର ଦେବ କହି ॥
କଣ୍ଠତଟ ତିଳକ ଯେ ଈଶ୍ୱର ଗହଣ ।
କମଳା ସଖୀ ବାହୁରେ ପୂଜାବିଧି କର ॥
ଲକ୍ଷ୍ମୀନାରାୟଣ ପୁଜ ହୃଦଦେଶେ ଦେଇ ।
ବ୍ରହ୍ମା ସ ବର୍ଷୀଙ୍କ ପୂଜା ନାଭିରେ ବସାଇ ॥
କାମଦେବ କାମାକ୍ଷୀଙ୍କି ଲିଙ୍ଗମୂଳେ ଦେବ ।
ଶଙ୍ଖିନୀ ଗଣପତିଙ୍କ ପଦାଦ୍ୟେ ପୂଜିବ ॥
ଦ୍ୱାଦଶ ତିଳକଭେଦ ଶୁଣ ମନ ଦେଇ ।
ପଞ୍ଚାଶ ଅକ୍ଷରେ ଯେ ନିର୍ବାଣ ପୂଜା ହୋଇ । ୩୫ ।

ଏ ପଞ୍ଚାଶ ଚିହ୍ନି କର ତିଳକ ଯେ ଯେତନ ।
ମୃତ୍ୟୁକାଳେ ଗମନ୍ତ ଏ ଶ୍ରୀକୃଷ୍ଣ ଭୁବନେ ॥

---

୨୫—୨ :—ଶୁଣିଲେ ଏଥିର ସନ୍ଧ ନ ଥିବ ଯେ ବାଧା—ଗ

ଏ ପଞ୍ଚାଶ ନ ଭେଦ ଯେ ଯେବଇଁ ଢଲକ ।
ମଲେଣ ସେ ଆଉଯାତ ହେଉଥାନ୍ତି ଲୋକ ॥
ସାଧୁଙ୍କ ମହତଘରେ ଜନ୍ମ ହେଉଥାନ୍ତି ।
ମୁକ୍ତିପଦ ଲଭନ୍ତି ସେ ଭକ୍ତ ନ ପ ବନ୍ତି ॥
ପଞ୍ଚାଶ ଅକ୍ଷର ଭେଦ ଢଲକ ଯେ ଦେବ ।
ବେନ ଚକ୍ଷୁକୋଣେ ସିଧି ଅକ୍ଷର ବସିବ ॥
ଋ ଅକ୍ଷ ବସିବ ଓଷ୍ଠର ଯେ ବେନ କୋଣେ ।
ଇ ଈ ବସିବ ଦନ୍ତପାଟିର ବେନ ସ୍ଥାନେ । ୪୦ ।
ଓଔ ଲଲାଟରେ ବସେ ଭୃତ୍ୱ ଭୂଜ ଦୁଇ ।
ଢ଼ ଢ଼ ବସେ ଶ୍ରବଣରେ ଏଐ କଣ୍ଠଚନ୍ଧି ॥
ଉ ଊ କୁକ୍ଷିରେ ବସେ ବ୍ରହ୍ମରନ୍ଧ୍ରେ ଅ ଆ ।
ଗୁରୁଙ୍କ ବଚନ ଏହୁ ଦୃଢ଼ଚିତ୍ତ ହୁଅ ॥
ଡାହାଣ ଭୂଜରେ କ ଖ ଗ ଘ ଙ ବସଇ ।
ବାମଭୂଜେ ଚ ଛ ଜ ଝ ଞ ଛର ଯେ ଶୋହୁ ॥
ଟ ଠ ଡ ଢ ଦକ୍ଷିଣ ଯେ ପାଦମଳେ ବସେ ।
ଣ ତ ଥ ଦ ଧ ନ ବାମପାଦ ଅଙ୍ଗେ ମିଶେ ॥
ପ ଫ ବ ଭ ମ ଯ ନାଭିଦେଶରେ ପ୍ରକାଶ ।
ର ଲ ଶ ଷ ସ ରେଖ ସ୍ଥାନ ହୋଏ ଶେଷ । ୪୫ ।
ହଂ କ୍ଷଂ ବ୍ରହ୍ମରନ୍ଧ୍ରେ ଏମନ୍ତେ ପ୍ରକାଶ ।
ଢଲକଭେଦ ଜାଣନ୍ତି ସେମନ୍ତ ଯେ ଦାସ ॥
ଏ ଭେଦ ନ ଜାଣି ଯେବେ ଯେବନ୍ତି ଢଲକ ।
ମନର ସଂଶୟମାନ ନ ଛୁଡ଼ଇ ତାଙ୍କ ॥
ଛଅ ଛନ୍ନ ଛନ୍ନ ଯେ ଶାସ୍ତ୍ରମାନ ଶୁଣି ।
କେଉଁଠାରୁ ପଶୁଥିବେ ହେଉଥାଇ ଗୁଣି ॥

---

୪୨—୧ ଉ ଊ—ଦକ୍ଷିଣରେ—ଗ ।

ଏଣୁକରି ସଦଗୁରୁଠାରୁ ଘେନ ନାମ ।
ନାମକୁ ଚିହ୍ନିଲେ ଦମ୍ଭ ମନର ହରମ ॥

ନାମ ବୀଜମନ୍ତ୍ର ଏକଅକ୍ଷର ଯେ ହୋଇ ।
ଦ୍ୱିତୀୟ ତାଳ ଯେ ଏକାକ୍ଷର ମନ୍ତ୍ର କହି । ୧୦ ।

ତୃତୀୟ ତାଳ ଯେ ପୁଣ ଅଟଇ ତାରକ ।
ଶ୍ୟାମ ପଞ୍ଚାକ୍ଷର ମନ୍ତ୍ର ଚତୁର୍ଥ ତ ଲେଖ ॥

ଷୋଳନାମ ଗୋଟି ପଞ୍ଚ ତାଳ ଯେ ଅଟଇ ।
ଏ ପଞ୍ଚମନ୍ତ୍ରରୁ ସର୍ବମନ୍ତ୍ର ଜନ୍ମ ହୋଇ ॥

ଏହୁ ପଞ୍ଚମନ୍ତ୍ର ଭଜ ଶୁଚିବନ୍ତେ ଥିବ ।
ଶ୍ୱାସ ଧାରଣ ପ୍ରାନ୍ତେ ସମାଧି ସାଧିବ ॥

ସହସ୍ର ପାପ ଜନ୍ମର ଅଙ୍ଗରେ ନ ମିଶେ ।
କୃଷ୍ଣଙ୍କ ନାମରେ ସେହୁ ମୁକ୍ତି ପରକାଶେ ॥

ହରଷ ହୋଇଲେ ଶୁଣି ଚକ୍ରଧର ଗୋପାଳ ।
ଅଚ୍ୟୁତର ଚରଣରେ ନମିଲେ ସକଳ ॥

ଏହୁ ଗୁରୁଭକ୍ତି ଗୀତା ଯେ ଜନ ପଢ଼ଇ ।
ଅନ୍ତେ ବୈକୁଣ୍ଠ ପୁରେ ସେହୁ ଯିବ ॥ ୧୬

ଇତି ଶ୍ରୀ ଗୁରୁଭକ୍ତିଗୀତାୟାଂ ଦ୍ୱିତୀୟଖଣ୍ଡେ ଗୁରୁଶିଷ୍ୟ
ବୋଧନେ ଚକ୍ରଧର ଗ୍ରନ୍ଥେ ନାମ
ଚତୁର୍ଥ ପଟଳ ।

# ପଞ୍ଚମ ପଟଳ

ବାଲକ ମଥୁର ବୃନ୍ଦାବନ ଯେ ସମ୍ବର ।
ମାଳାମାନ କ ନମନ୍ତେ ହୃଦେ ଆନ୍ତ ଧର ॥

ଏଥର ଯେ ସାର ଗୁରୁ କନ୍ଦ୍ରଦେବ ପୁଣ ।
କେମନ୍ତ କର ଭଜନ କେଉଁ ମନ୍ତ୍ରେ ପୁଣ ॥

ଶୁଣ ଅହୋ ଗୋପସୁତ କନ୍ଦ୍ରଦେବା କହୁ ।
ଅପାର ମହିମା ଯେ ତୁଳସୀମାଳେ ଅଛୁ ॥

ଶତେ ଅଷ୍ଟଗୋଟି ଯେ ତୁଳସୀ ମାଳକର ।
ମେରୁ ବୋଲି ଏକଗୋଟି ସର୍ବ ପରେ ଭର ॥

ବ୍ରହ୍ମଅଙ୍ଗ ଧରଣ ଯେ ଅଛନ୍ତ ତୁଳସୀ ।
ସାଧୁନଜମାନେ ଭଜନକୁ କର ଆଶା ॥ ୫ ॥

ଛଅ ଗଣ୍ଠାଠାରେ ନେତ୍ର ଅଟଇ ପ୍ରମାଣ ।
ଦ୍ୱାଦଶ ଗଣ୍ଠାଠାରେ ଯେ ଭୁଜ ପରମାଣ ॥

କୋଡ଼ିଏ ଗଣ୍ଠାରେ ତାଙ୍କ ଚରଣ ଅଟଇ ।
ପଚଶ ଗଣ୍ଠାରେ ପୁଣ ଆଦ୍ଧ ପାଦ ହୋଇ ॥

ଆଠଗୋଟି ଶଏପରେ ଆରପାଦ ଜାଣ ।
ମେରୁ ଯେତୁ ଶିର ତାଙ୍କ ଅଟଇ ପ୍ରମାଣ ॥

ଏମନ୍ତ ହୋଇଣ ଯେ ଅନନ୍ତ ବ୍ରହ୍ମରୂପ ।
ଭଗବାନଙ୍କ ମନ୍ତ୍ରମାନଙ୍କୁ ଯେ ଜପ ।
ଅନାମିକା ଅଙ୍ଗୁଳି ଯେ ମଧ୍ୟରେ ଧରିବ ।
ଇଷ୍ଟମନ୍ତ୍ର ଯେ ଯାହାର ଚିହ୍ନରେ ଜପିବ । ୧୦ ।

ସ୍ମରଦ୍ୱାର ଫେରାଇଲେ ଗ୍ରନ୍ଥେ ପୁଣ ହୋଇ ।
ଷୋଳଗ୍ରନ୍ଥ ଫେରାଇଲେ ଲକ୍ଷେ ଯେ ବୋଲଇ ॥

ପନ୍ଦର-ଗଣ୍ଡା ଯେ ଦୁଇ ଗୋଟିର ଭଜନ ।
ଶିଷ୍ୟର ଯେ ପାପମାନ ହୁଅଇ ଦହନ ॥
ଅର୍ଦ୍ଧରେ ଯେ ଦୁଇଗୋଟି ଗୁରୁଙ୍କ ଦକ୍ଷିଣା ।
ଏଣୁକରି ଶିଷ୍ୟ ମନ୍ତ୍ର କରୁଥିବ ଗଣା ॥
କେ ଅବା ଗ୍ରନ୍ଥେ ଜପିବ କେବା ଦୁଇଗ୍ରନ୍ଥ ।
କେ ଅବା ତୁଏ ଜପିବ ତପସ୍ୟାଜଡ଼ିତ ॥

କେ ଅବା ତୃତୀୟ ଗ୍ରନ୍ଥ କେବା ସ୍ୱର ପାରେ ।
ତପସ୍ୟା ତେଜିଲେ ଅବା ଲକ୍ଷେ ନାମ ଧରେ । ୧୯ ।

ତର୍ଜନୀ ଅଙ୍ଗୁଷ୍ଠ ଅଗ୍ରେ ମନ୍ତ୍ର ନ ଜପିବ ।
ଯେତେକ ଜପ କରିବ ନିଷ୍ଫଳ ହୋଇବ ॥
ଅସଂଖ୍ୟ କରଣ ଯେବେ ମନ୍ତ୍ର ଜପ କରି ।
ମଲେଂ ଲଭନ୍ତି ସେ ଯେ ବଇକୁଣ୍ଠ ପୁରୀ ॥
ରାଜାଘରେ ସାଧୁତ ମହାନ୍ତ ଘରେ ଜାତ ।
ଭଜନ ସିଦ୍ଧି ନୋହୁଣୁ ଯେବେ ହୋଏ ହତ ॥

ଚୁଆ ଗ୍ରନ୍ଥ ଲକ୍ଷେ ଜାଣି ଯେ ନର ଜପଇ ।
ଗୋଲୋକେ ପ୍ରବେଶ ହୋଇ ବୈଷ୍ଣବେ ଜନ୍ମଇ ॥
ଗୋଲୋକେ ବୈଷ୍ଣବଘରେ ଆତଯାତ ହୋଇ ।

ରାଜୁତ ସାଧୁତ ଘରେ ଜନ୍ମ ତାର ନାହିଁ ॥ ୨୦ ॥
ମହାନ୍ତ ଦଣ୍ଡପାଟରେ ନୋହନ୍ତି ସେ ଜାତ ।
ମହାନ୍ତ ଦଣ୍ଡପାଟରେ ମୁରଟ ବହୁତ ॥
ରାଜୁତ ସାଧୁତ ଯେ ମହାନ୍ତ ପୁଣି ହୋଇ ।
ମମତା ଛାଡ଼ିଲେ ସେହୁ ଭଗତ ଲଭଇ ॥

ଏଣୁକରି ତୁମ୍ଭେମାନେ ନିଜ କର୍ମ ଛାଡ଼ ।
ସନ୍ନ୍ୟାସ ରହିଲେ ତୁମ୍ଭ ହୋଇବ ଯେ ବଡ଼ ॥
ଯୋଗ୍ୟପୁଣି ହେଲେ ମନ୍ତ୍ର ଭଜନ କରଇ ।
ଗୁରୁଙ୍କ ଦକ୍ଷିଣା ଜପେ ଗୁରୁ ରଥ ପାଇ ॥

ଦ୍ୱି ଷଷ୍ଠ ଯେ ମାଳାଗୋଟି ଶିଷ୍ୟର ଦେହରେ ।
ଗୁରୁଙ୍କ ଜନମନ୍ତ୍ରେ ଶିଷ୍ୟ ବନ୍ଧଇ ହୃଦରେ । ୧୫ ।

ପଞ୍ଚାଶ ଶିଷ୍ୟରେ ଶତ ଗୁରୁଙ୍କର ମାଳ ।
ଅଠର ଜନମନ୍ତ୍ରେ ଗୁଟେ ଗୋଟି ଉଣ୍ଡେ ମିଳ ॥
ଏଣୁ କରି ଶିଷ୍ୟଠାରେ ଗୁରୁଙ୍କ ଭଜନ ।
ଯୋଗ୍ୟ ଶିଷ୍ୟ ହେଲେ ଗୁରୁ ତାରନ୍ତି ସେ ପୁଣ ॥

ଶିଷ୍ୟ ସ୍ନାହାନ ସାରିଲେ ଗୁରୁ ସ୍ନାନ କରି ।
ଏଣୁ କରି ଗୁରୁଙ୍କ ପାପକୃତ ହରି ॥
ଜ୍ଞାନବଳେ ଗୁରୁ ପୁଣ ଶିଷ୍ୟପାପ ନାଶେ ।
ନିତ୍ୟଚରଣଙ୍କୁ ଧ୍ୟାୟୀ ଥାଆନ୍ତି ମାନସେ ॥
ଜୀବ ପରମର ଭେଦ ଗୁରୁ ଯେ ଜାଣଇ ।
ସେ ଗୁରୁ ଆପଣେ ତରି ଶିଷ୍ୟ ତାରି ନେଇ । ୨୦ ।

ଯେଉଁ ଗୁରୁର ଜୀବ ପରମ ଭେଦ ନାହିଁ ।
ଗୁରୁ ଶିଷ୍ୟ ଭ୍ରମୁଥାନ୍ତି ଦେହ ନାନା ବହି ॥
ମୁକୁନ୍ଦ ଅନନ୍ତ ବାଣୀ ଯେନବା ଗୋସାଇଁ ।
ହୃଦୟରେ ଯେମନ୍ତେ ମନ୍ତ୍ରମାନ ଜପ ହୋଇ ?
ଜ୍ଞାପନ୍ତ୍ରେ ସ୍ପଷ୍ଟ ମନ୍ତ୍ରାନ୍ତ ଟିକି ଶୁଣ ବେଦଜନ ।
ତୁମ୍ଭେ ସେ ପରତପାର ଗୁପ୍ତ କଥାମାନ ॥
ପୂର୍ବର ବାସନା ଥିଲ ବିପସ୍ଥା ତେଜିଲ ।
ଗୋକୁଳ କୁଳରେ ତୁମ୍ଭେ ବିହନ ହୋଇଲ ॥
ଫଳ ବୃକ୍ଷମାନଙ୍କୁ ଖଣ୍ଡନ୍ତା ଯେବେ ଥାଇ ।
ସକଳ ତାହାର ପୁଣ ବାହାର ହୁଅଇ । ୨୫ ।

କହୁବା ତହିଁର କଥା ଶୁଣ ବେଦଜନ ।
ଅଙ୍ଗୁଷ୍ଠି ରେଖାରେ ଜପ ଯେମନ୍ତ ହୋଇଣ ॥
ଭୋଡ଼ଏ ଜୁଆ ସେ ନାମ ଭଜନ କରିବ ।
ତଜଣ ଭୋଡ଼ଏ ନାମ ଜେମନ୍ତ ବୁଝିବ ॥

ବାମହସ୍ତେ ଜୋଡ଼ିକ ପୂରିବା ଅନୁସାରେ ।
ଗ୍ରନ୍ଥେକ ହୁଅଇ ପୁଣି ଏକ ଯେ ବଂଶରେ ॥
ଗ୍ରନ୍ଥେକ ନାମ ଯେ ପୁଣି ଶୁଣ ମନଦେଇ ।
ଚାରିଶ ଛଅ ହଜାର ପ୍ରମାଣ ଅଟଇ ॥
ଷୋଳ ଗ୍ରନ୍ଥେ ନାମ ପୁଣି ଲକ୍ଷେକ ପ୍ରମାଣ ।
ଦୁଇ ସହସ୍ର ଚାରିଶତି ଅଧିକ ଯେ ଜାଣ ।୪୦ ।

ଏମନ୍ତ ଯୋଜିଣ ମନ୍ତ୍ର ଭଜନ ଅଟଇ ।
ଦୁଇ ସହସ୍ର ଚାରିଶ ଗୁରୁଙ୍କ ମନ୍ତ୍ର ହୋଇ
ଲକ୍ଷେ ନାମ ଜପି ଶିଷ୍ୟ ଅଭେଦ ଅଟଇ ।
ଶିଷ୍ୟ ଏଣୁ କହେ ଯେ ଭେଦାଭେଦ ନାହିଁ ॥

ତତ୍ତ୍ୱ ନ ଜାଣିଲେ ମନ୍ତ୍ର ହୃଦେ ଦୃଢ଼ କର ।
ମୁଖେ ଜପ କରୁଥାଇ ମନ୍ତ୍ରନାମ ଧର ॥
ପବନ ହନୁମାନ ଦୁଇ ପଚାରୁଁ ଗୋସାଇଁ ।
ତତ୍ତ୍ୱର ଭଜନ ଏବେ କହିବା ବୁଝାଇ ॥
ଶୁଣ ହେ ପବନ ଦାସ ଅତି ଏ ଗୁପତ ।
ସହସ୍ର ଜନରେ ଅବା ଜାଣେ ଏକ ତତ୍ତ୍ୱ ।୪୫

ସଦଗୁରୁ ମିଳିଲେ ଯେ ସତଶିଷ୍ୟ ପାଇ ।
ଅପଗୁରୁ ଅବା ଅପଶିଷ୍ୟ ନ ଜାଣଇ ॥
ପରମ ଗୁପତ ଦୀକ୍ଷା ଭଜନର ସାର ।
ହେତୁମନେ ପବନ ହେ ହନୁମାନ ବୀର ॥

ଶୁଣ ଆହେ ଗୋପ୍ୟତ ତତ୍ତ୍ୱ ଅଛି ଭେଦ ।
ହୋଇଛି ମନ୍ତ୍ର ତତ୍ତ୍ୱରେ ଚାରିଗୋଟି ଛନ୍ଦ ॥
ଗାୟତ୍ରୀ ବଟଣ ମୂଳେ ସାବିତ୍ରୀ ବସଇ ।
ବ୍ରହ୍ମ ସ୍ତ ଷ ବ୍ରହ୍ମ ସ୍ତି ସ ଚାରିମନ୍ତ୍ର ହୋଇ ॥

ଚାରିମନ୍ତ୍ର ଏକ ଏକ ଅକ୍ଷର ମନ୍ତ୍ରସାର ।
ବର୍ଣ୍ଣୋଭ ପୂରିଛି ମନ୍ତ୍ର ମନରେ ବିଚାର ।୫୦।

ଆବର ଛନ୍ଦକୁ ମେରୁ ଅଙ୍କରେ ବସାଇ ।
ଏ ତତ୍ତ୍ୱ ଜାଣିଲେ ଶିଷ୍ୟ ଭଗତ ଲଭଇ ॥
ମାଳରେଖ ଜପ କଲେ ନବ ଭକ୍ତି ହୋଇ ।
ଦଶ ଯେ ଭଗତତତ୍ତ୍ୱ ଜପ କଲେ ପାଇ ॥
ମାତାଗର୍ଭେ ରେଖାମାଳ ଜପକରେ ଜୀବ ।
ମୃତ୍ୟୁକାଳେ ରେଖାମାଳ ଜପି ନ ପାରଇ ॥
ମମତା ଦେହରେ ରେଖାମାଳ ଜପହୋଏ ।
ତତ୍ତ୍ୱ ନ ଜାଣିଲ ଶିଷ୍ୟ ଜପ କରୁଥାଏ ॥
ଯେଉଁ ଶିଷ୍ୟ ତତ୍ତ୍ୱରେ ଭଜନ ପୂର୍ଣ୍ଣ କରେ ।
ମୃତ୍ୟୁକାଳେ ମନେ ଭଜି ଅମନେ ବିହରେ । ✤✤ ।
ନିଶି ଦିବସରେ ଜପ କରୁଛୁ ଇଚ୍ଛାରେ ।
ସେ ଜପର ସାଧନରେ ବିଶ୍ରାମରେ ଧରେ ॥
ନିଶି ଦିବସରେ ହଂସ ଜପ କରୁଥାଇ ।
ଏକୋଇଶ ହଜାର ଯେ ଛଅଶ ଅଟଇ ।
ଏମନ୍ତ ଭଜନ ଯେ କରିପାରେ ନିତ ।
ଶ୍ୱେତ ରଙ୍ଗ ଶ୍ୟାମଳ କଳାରେ ଦେଇ ମତ ॥
ତେବେ ଜୀବ ଗତି ପାଏ ଗୁରୁମୁଖୁଁ ଶୁଣି ।
ଗୁରୁ ଶିଷ୍ୟ ତରନ୍ତି ଯେ ତତ୍ତ୍ୱ ଜପ ଗୁଣି ॥
ଜପିଲେ ଭଗତ ଗତି ପାଇବ ଉତ୍ତମ ।
ସଦଗୁରୁ ସେବିଥିଲେ ସଦଶିଷ୍ୟ ମାନ ॥ ୭୦ ॥
ଏହି ଗୁରୁଭକ୍ତିଗୀତା ଦ୍ୱିତୀୟ ଖଣ୍ଡରେ ।
କହଇ ଅଚ୍ୟୁତ ଗୋପସୁତଙ୍କ ଆଗରେ ॥ ୭୧ ॥

**ଇତି ଶ୍ରୀ ଗୁରୁଭକ୍ତିଗୀତାୟାଂ ଦ୍ୱିତୀୟ ଖଣ୍ଡେ ଗୁରୁଶିଷ୍ୟ ବୋଧନେ ମାଳାନିର୍ଣ୍ଣୟେ ଭଜନବିଧି କଥନେ ନାମ ପଞ୍ଚମ ପଟଳଃ ।**

—✻—

## ଷଷ୍ଠ ପଟଳ

ନନ୍ଦଦାସ ପଚ୍ଛରଇ ଗୁରୁମୁଖ ଚାହିଁ ।
କେଉଁ ନର ତୁଳସୀର ମାଳ ଥାନ୍ତି ବହି ॥

ଶୁଣ ନନ୍ଦଦାସ ବସ୍ତ୍ର କହୁ ଦେବା ତୋରେ ।
ତୁଳସୀ ବନ୍ଧଣ ଥାନ୍ତି ଯେ ଜନ ହୃଦରେ ॥

ଶିରରେ ତୁଳସୀ ଥିଲେ ବ୍ରହ୍ମହତ୍ୟା ହରେ ।
କର୍ଣ୍ଣରେ ତୁଳସୀ ଥିଲେ ଗୋହତ୍ୟା ନିବାରେ ॥

କଣ୍ଠରେ ତୁଳସୀ ଥିଲେ ଭଗତ ଲକ୍ଷଇ ।
ବାହୁରେ ବାନ୍ଧିଥିଲେ ସୁରାପାନ କ୍ଷୟ ଯାଇ ॥

ମାତୃ ଯେ ହରଣ ଦୋଷ ହୃଦୟରେ ନାଶେ ।
କରମାଳେ ବସ୍ତୁଘାତକ ଯେ ବିନାଶେ ॥ ୫ ॥

ଶଏ ଅଷ୍ଟୋତ୍ତର ଯେ ଦୃଢ଼ରେ ଲମ୍ବାଇ ।
ଚଉବନ ଗୋଟି କଣ୍ଠଃରେ ଘେନଇ ॥
ଚଉବନ ଅଙ୍କ କରମାଳାରେ ଧରିବ ।
କରମାଳା ଅଙ୍କ ଯେ କଣ୍ଠରେ ଥୋଇବ ॥

ଗୋଟିଏ ବଳିବ ତହିଁ ମେରୁ ଅଙ୍କେ ହେବ ।
ଛଡ଼ ଗୋଟି ଅଙ୍କେ ହେବ ଲେଖାକୁ ଆସିବ ॥

କର୍ଣ୍ଣ ଅଙ୍କ ଶିଖପରେ ରଖିବ ଯତନ ।
ଏମନ୍ତେଣ ବୈଷ୍ଣବ ମାଳାର ଭଜନ ॥

ଲାଗେ ନ କରଣ ମଳ ବନ୍ଧଣ ଯେ ଥାନ୍ତି ।
ମୁକତ ପଥରେ ଯାନ୍ତି ଭତ୍ତ ନ ପାବନ୍ତି ॥ ୧୦ ॥

ତୁମ୍ଭ ଦେହ ଅନ୍ତେ ଦାସ ହୋଇବେ ଅପାର ।
ବହୁତ କାଠ ବହିବେ ହୃଦୟ ଦେଶର ॥

ଜନ୍ମପଣେ ଗୁରୁଠାରେ ନମ୍ରତଈ ବୋଲୁ ।
ମାଲାମାନ ବନ୍ଧୁଥିବେ ବଡ଼ପଣ ବନ୍ଧୁ ॥

ଲୋଭବନ୍ତ ଗୁରୁମାନେ କଳିରେ ପ୍ରବଳ ।
ନ ବୁଝି ନ ପଢ଼ି ମନ୍ତ୍ର ଦେବେ କର୍ଣ୍ଣମୂଳ ॥

ଯନ୍ତ୍ର ଭେଦ ନ ଜାଣେ ସେ ମନ୍ତ୍ର କି ସେ ପାଏ ।
କଣ୍ଠି ପୁଷ୍ପେ ଭ୍ରମର ନଗଣ ଯେସନ୍ତେ ହୋଏ ॥

ମନ୍ତ୍ରକୁ ବୁଝାଇ ଯେବେ ଯନ୍ତ୍ରକୁ ବୁଝାଇ ।
ତନ୍ତ୍ରକୁ ବୁଝିଣ ଯେବେ ଜ୍ୟୋତିରୂପ ଧ୍ୟାୟି । ୧୬ ।

ଜ୍ୟୋତିର କଳ ଅଟଇ ବ୍ରହ୍ମା ଯେ ଅବାକ୍ତ ।
ଗୁରୁଜନମାନଙ୍କର ଏ ସାଧନା ବଡ଼ ॥

ଏ ସାଧନା ଅଙ୍ଗେ ଥିଲେ ଅଗ୍ନିରୂପ ହୋଇ ।
ପାପମାନେ ଏ ସାଧନେ ଦଗ୍ଧ ଭସ୍ମ ଯାଇ ॥

ଅଚ୍ୟୁତ ଦାସ ସେ ମୂର୍ଖ କହୁଲି ଗ୍ରନ୍ଥରେ ।
ବାର ଦାସ ସେ ସାଧନ କର ନିରନ୍ତରେ ॥

ଗୁରୁଭକ୍ତିଗୀତା ଏ ଷଷ୍ଠମ ଛାନ୍ଦ ରସ ।
ଶିଷ୍ୟ ହେତୁ ନିମନ୍ତେଣ କଲଇ ପ୍ରକାଶ । ୨୦ ।

**ଇତି ଶ୍ରୀ ଗୁରୁଭକ୍ତିଗୀତାୟାଂ ଦ୍ୱିଷଷ୍ଠଖଣ୍ଡେ ଗୁରୁଶିଷ୍ୟ**
**ବୋଧନେ ମାଳାସଂଖ୍ୟାନିରୂପଣେ**
**ନାମ ଷଷ୍ଠପଟଳଃ ।**



# ସପ୍ତମ ପଟଳ

ବୃନ୍ଦାବନ ଗୋବିନ୍ଦ ପୁଚ୍ଛନ୍ତି ବେନ ଜନ ।
ସଂଶୟ ଫେଡ଼ଣ ଶୁଭ କହିବା ଯତନ ॥

ସ୍ନାନର ଫଳ ସେ ମୋତେ କହିବା ବୁଝାଇ ।
କେଉଁ କାଳେ ସ୍ନାନ କଲେ କେଉଁ ଫଳ ପାଇ ॥
ଶୁଣ ଆହେ ଗୋପପୁତ୍ର କହିବ ତୁମ୍ଭରେ ।
କେଉଁ କାଳେ ସ୍ନାନ କଲେ କେଉଁ ଫଳ ମିଳେ ॥

ସୂର୍ଯ୍ୟ ଅଣଉଦୟେ ସ୍ନାହାନ ଯଦି କର ।
ବତିଶ ଦଣ୍ଡର ଫଳ ହୁଅଇ ତାହାର ॥
ସୂର୍ଯ୍ୟ ଉଦୟ କାଳେ ଯେ ସ୍ନାହାନ କରଇ ।
ଷୋଳଦଣ୍ଡ ଫଳ ପୁଣ ସେ କାଳେ ଲଭଇ ॥ ୫ ॥

ପ୍ରହରକଠାରେ ଯେବେ କରଇ ସ୍ନାହାନ ।
ଆଠ ଦଣ୍ଡ ଫଳ ପୁଣ ଲଭଇ ସେ ଜନ ॥
ଦ୍ୱିତୀୟ ପ୍ରହରେ ଯେବେ ସ୍ନାହାନ କରଇ ।
ସ୍ୱର୍ଗଖଣ୍ଡ ଫଳ ପୁଣ ସେକାଳେ ଲଭଇ ॥

ସୂର୍ଯ୍ୟ ଅସ୍ତେ ସ୍ନାହାନ କରନ୍ତି ଯେଉଁ ଜନ ।
ଚଉଷଠି ଦଣ୍ଡ ଫଳ ଲଭନ୍ତି ସେ ପୁଣ ॥

ଅଣ ଯେ ଉଦୟ ସ୍ନାନ ଋଷି ବଇଷ୍ଣବ ।
ଉଦୟ ସ୍ନାହାନ ପୁଣ ସଂସାରୀ କରିବ ॥
ଦ୍ୱିତୀୟ ପ୍ରହର ସ୍ନାନ ତପସ୍ୱୀଥା ଜାଣ ।
ତୃତୀୟ ପ୍ରହର ସ୍ନାନ କାହିଁରେ ନ ଗଣ ॥ ୧୦ ॥

ଚତୁର୍ଥ ପ୍ରହର ସ୍ନାନ ଫଳ ଅନ୍ତ ନୋହେ ।
ଅସ୍ତ ବାର ସ୍ନାହାନ ସକଳ ଶାସ୍ତ୍ରେ କହେ ॥

ଅଣ ହୃଦସ୍ଥ ସ୍ନାନ ପ୍ରାତସ୍ନାନ ଦୁଇ ।
ଏକ ସନ୍ଧ୍ୟା ବୋଲି କରି ତାହାକୁଟି କହୁ ॥
ଦ୍ୱିତୀୟ ପ୍ରହର ସ୍ନାନ ତୃତୀୟ ପ୍ରହର ।
ଦୁଇ ସନ୍ଧ୍ୟା ବୋଲି କରି ଏଥିର ବିସ୍ତର ॥

ଅସ୍ତ ସ୍ନାନ ରାଜ ତ୍ରିସନ୍ଧ୍ୟା ଅଟଇ ।
ରାଜ ପ୍ରହରକଠାରୁ କର୍ମ ବିଧି କହୁ ॥
କର୍ମ ସ୍ନାନ ଏମନ୍ତ ଅଟଇ ପୁଣି ଶୁଣ ।
ତତ୍ତ୍ୱସ୍ନାନ କଲେ ପାପ ହୁଅଇ ଦହନ ॥ ୧୫ ॥

ଗଙ୍ଗା ଯେ ଯମୁନା ସରସ୍ୱତୀ ତିନି ନଦୀ ।
ଅଙ୍କ ମାଝା ଜଳରୁ ସେ ଆସୁଅଛୁ ବନ୍ଧୁ ।
ସେ ନଦୀରେ ଯେତିମାନେ କରନ୍ତି ସ୍ନାହାନ ।
ଅଖଣ୍ଡ ଫଳ ଲଭନ୍ତି ସେହୁ ପୁଣ୍ୟ ଜନ ॥

ଓଙ୍କାର ଆକାର ପ୍ରଣବ ସାର ନଦୀ ।
ଓଁକାରରୁ ଏହୁ ତିନି ଧାରେ ବହୁ ଯାଇ ॥
ମାତାଗର୍ଭ ପାପ ଯାଏ ଜନ୍ମକର୍ମ ପାପ ।
ପୂର୍ବଜନ୍ମ ପାପମାନ ଖଣ୍ଡଇ ତୁରିତ ॥
ସାଧୁ ବିପ୍ରମାନେ ସେହୁ ଜଳେ ସ୍ନାନ କରି ।
ତ୍ରିବେଣୀ ନଦୀରେ ପୁଣ ପ୍ରାତ ସନ୍ଧ୍ୟା ସାରି ॥
ଜଳସ୍ନାନ ସାରିଣ ଯେ ମନ୍ତ୍ର ସ୍ନାନକରି ।
ମନ୍ତ୍ରସ୍ନାନ ସାରିଣ ଯେ ତ୍ରିବେଣୀ ସୁମରି ॥ ୨୦ ॥

ତିନିବାର ସ୍ନାହାନରେ ଶୁଦ୍ଧ ହୋଏ କାଏ ।
ଜଳେ ସ୍ନାନ କଲେ ଦେହ ମଳ ଛାଡ଼ିଯାଏ ॥
ମନ୍ତ୍ରସ୍ନାନ କଲେ ଦେହ ଶୁଚିବନ୍ତ ହୋଇ ।
ତ୍ରିବେଣୀ ସ୍ନାହାନ କଲେ ପାପ ଧୁଇଯାଇ ॥
ଋଷି ବିପ୍ର ବଇଷ୍ଣବ ପୁଣି ନରମାନେ ।
ରେଚକ ପୂରକ ଯେ କୁମ୍ଭକ କରି ମନେ ॥

ଭୂର୍ଭୁବଃ ସ୍ୱଃ ମାତୃକା ଯେ କର ଅଙ୍ଗନ୍ୟାସ ।
ଷଡ଼ଙ୍ଗ କବଚ ଭୂତଶୁଦ୍ଧିରେ ପ୍ରକାଶ ॥
ସେହୁ ତ୍ରିବେଣୀରେ ପଶି ସେହୁ ଜପ କରେ ।
ସକଳ ପାତକମାନ ହରନ୍ତି ସେଠାରେ ॥

ଏ ଭେଦ ନ ଜାଣି ଯେ ଜଳରେ ସ୍ନାନ କରେ ।
ଦେହକୁ ଆଶ୍ରମ ଧରେ ଭୋଗ ସୁଖ କରେ ॥
କେ କୃମି ରୋଗକୁ ସୁଖ ଅଟଇଟି ଜଳ ।
ସଂସାର କର୍ମମାନଙ୍କୁ ଅଟଇ କୁଶଳ ॥

ଏହୁ ଗୁରୁଭକ୍ତି ଗୀତା ସପ୍ତମ ଛାନ୍ଦରେ ।
ଅଚ୍ୟୁତ ଦାସ କହଇ ଦ୍ୱିତୀୟ ଖଣ୍ଡରେ ॥ ୧୮ ॥

ଇତି ଶ୍ରୀଗୁରୁଭକ୍ତିଗୀତାୟାଂ ଦ୍ୱିତୀୟ ଖଣ୍ଡେ
ଗୁରୁଶିଷ୍ୟ ବୋଧନେ ସ୍ନାନଯୋଗ କଥନେ
ନ ମଃ ସପ୍ତମ ପଟଲଃ ।

———[ ][ ]———

# ଅଷ୍ଟମ ପଟଳ

ମୁକୁନ୍ଦ ଅନନ୍ତ ଦାସ ଭୃଥଦାସ ଜନ ।
ଆଜ୍ଞା ହେଉ ଗୁରୁଦେବ ଛାୟା ଭେଦ ଚିହ୍ନି ॥
ଛାୟାର କେମନ୍ତ ଫଳ ଗୁରୁଦେବ କହ ।
କେମନ୍ତେ ସାଧନ ହେବ ଶୁଣିବ ଗୋସାଇଁ ॥

ଶୁଣ ଅହେ ଗୋପସୁତ ଗୁପତ ଏ କଥା ।
ସଦଗୁରୁ ଜାଣନ୍ତି ଯେ ଛାୟାର ବ୍ୟବସ୍ଥା ।
ମାଘ ଯେ ଫଗୁଣ ଭାଦ୍ରମାସ ହୋଇଥିବ ।
ଶୁକଳ ପକ୍ଷରେ ଭଲ ଦନ ପଡ଼ିଥିବ ॥
ବୃଷ୍ଟି ବଜ୍ରପାତ ଯେ ନ ଥିବ ସେହି ଦନ ।
ମାହେନ୍ଦ୍ର ବାରୁଣୀ ପଡ଼ିଥିବ ଯୋଗ ମାନ ॥ ୫ ॥

ଶୁଭ ଚନ୍ଦ୍ର ଶୁଭ ତାର ଦେଖି ଶୁଭ ବାର ।
ଛାୟାଭେଦ ଦେଖାଇବ ଅମୃତ ଯୋଗର ॥
କାଳ ଯେ ଯେ ଛାଏଣି ଛାୟାରେ ସେହୁ ମିଶେ ।
ମନୁଷ୍ୟଙ୍କୁ ଜଗିଥାନ୍ତି ଗ୍ରହ ଯେ ଦବସେ ॥
କାୟା ଯେତେ କର୍ମ କରେ ଛାୟେଣି ଜାଣଇ ।
ଛାୟେଣି ଜାଣିଣ ଛାୟା ଆଗରେ କହଇ ॥
ଗ୍ରହ ଦିନ ପାପ ପୁଣ୍ୟ ଲେଖା ହୋଇଥାଇ ।
ସ୍ୱପନସୁନ୍ଦରୀ ତାର ସଖୀଗଣ ହୋଇ ॥

ସ୍ୱପନସୁନ୍ଦରୀ ଛାୟା ଅଗେ କହେ ଯେଣୁ ।
ଯେଉଁ କର୍ମ କରିଥାନ୍ତି ପ୍ରାଣିମାନେ ତେଣୁ ॥ ୧୦ ॥

କାଳପୁରୁଷ ଯେ ତାହା ଲେଖନ କରଇ ।
କାଳ ଯେ ପୁରୁଷ ତାର କରଣ ଅଟଇ ॥

ବହୁତ ପାପ ହୋଇଲେ ଅକାଳ ମରଣ ।
ପୁଣ୍ୟ କରିଥିଲେ କାଳେ ଲଭଇ ମରଣ ॥
ଛାୟା ଯେ ମିଶଇ ପୁଣ ଶୂନ୍ୟରେଣ ଯାଇ ।
ଛାଏଣି ପୁଣ ଯେ ଶୂନ୍ୟ ଭିତରେ ପଶଇ ॥
ଧର୍ମ ବୋଲି କହ କନ୍ଦ ଛାୟା ଯେ ପୁରୁଷ ।
ଧର୍ମନେଇ ଭେଟାଇଛି ଯମରାଜା ପାଶ ॥
ଏଣୁକରି ଧର୍ମ କଥା ଅତ୍ୟେ କହୁଥିବ ।
ଛାୟାରୂପ ଦରଶନେ ଧର୍ମଫଳ ହେବ ॥ ୧୯ ॥

ନୟନେ ବସ୍ତ୍ର ଏକ କରେ ଯତନ ।
ଶୀତଳ ସଖା କରିବ ନାନା ବିଧିମାନ ॥
ଏକଦୃଷ୍ଟି ରଖିବ ଯେ ଛାଏଣି ଶିରରେ ।
ଛାଏଣି ଶିଖରୁ ଦୃଷ୍ଟି ଦେବ ଛାଇଠାରେ ॥
ଧବଳ ଶରୀର ଯେବେ ଆକାଶେ ଦଶିବ ।
ପ୍ରସନ୍ନ ହୋଇଲେ ବୋଲି ନିଶ୍ଚୟବୋଧ ହେବ ॥
ଶିର ଯଦି ନ ଦଶିବ ଛାଇର ପ୍ରମାଣ ।
ଜନ୍ମରୁ ଜାଣିବ ସେ ପିତୃର ମରଣ ।
ହସ୍ତ ନ ଦଶିଲେ ଭ୍ରାତ ନଷ୍ଟେ ମରଇ ।
ପାଦ ନ ଦଶିଲେ ତାର ପୁତ୍ର ନାଶ ଯାଇ ॥ ୨୦ ॥

ଉଦର ଯେ ନ ଦଶିଲେ ମାତୃ ହୋଏ ହତ ।
ଛାୟା ବୃକ୍ଷ ନ ଦଶିଲେ ଆପେ ହୋଏ ହତ ॥
ବଡ ଭାବ ହୋଇଲେ ଯେ ଦଏ ବହୁଦୁଃଖ ।
ଛାୟା ଦରଶନେ ପୁଣ ଜାଣିବ ଏତେକ ॥
ଗୁଣବାନ ପ୍ରାଣୀ ଯେବେ ଏହା ଭେଦପାରେ ।
ଧର୍ମକଥା କହୁଥାଇ ଜଣେ ଅବସରେ ॥
ଛାୟାର ଯେ ଅଙ୍ଗ ଜାଣ ଓଁକାର ଅଟଇ ।
ଓଁ କାର ଯେ ବ୍ରହ୍ମରୂପ ଅନନ୍ତି ଯେହୁ ॥

ଶ୍ୱେତ ଅନନ୍ତ ରୂପକୁ ଧ୍ୟାନ ଯେ କରିବ ।
ନଢ ଢଳ ବେଳେ ତାଙ୍କୁ ଦର୍ଶନ କରିବେ । ୨୫ ।
ହ୍ରୀଁ ବ୍ରହ୍ମ ସ୍ୱରୂପ ବୋଲିଣ ସେ ନମିବ ।
ଅଚ୍ୟୁତର ଗଣ ସେହୁ ଏହା ଯେ ବୁଝିବ ।।
ଗୁରୁଭକ୍ତ ଗୀତା ଦ୍ୱିତୀୟଖଣ୍ଡର ବାଣୀ ।
ଅଷ୍ଟମ ଛାନ୍ଦ ଏ ଛାୟା ବ୍ରହ୍ମର କାହାଣୀ ।।

ଇତି ଶ୍ରୀ ଗୁରୁଭକ୍ତ ଗୀତାୟାଂ ଦ୍ୱିତୀୟଖଣ୍ଡେ
ଗୁରୁଶିଷ୍ୟବୋଧନେ ଛାୟାରୂପ କଥନେ
ନାମ ଅଷ୍ଟମ ପଟଳଃ ।



# ନବମ ପଟଳ

ଶୁଣ ହେ ଚନ୍ଦଣ ତୁମ୍ଭେ ସ୍ରମ ବିଷ୍ଣୁ ଦାସ ।
ଅବାଙ୍ଗ ଜ୍ୟୋତିଙ୍କ ସେ ଯେ ମନେ ତୁମ୍ଭେ ଘୋଷ ॥

ଚକ୍ଷୁ ଫେଡ଼ି ତ୍ରିକୁଟିକୁ ଯେବେ ଲକ୍ଷ୍ୟ କର ।
ସେ ପଥକୁ ସାଧୁମାନେ ପାରନ୍ତି ଯେ ଧର ॥

କଜ୍ଜଳର ମାଳା ପ୍ରାୟେ ଦିଶଇ ଯତନ ॥
ଚକ୍ଷୁରେ ଦେଖିଲେ ସେ ଯେ ହୁଅନ୍ତି ପ୍ରସନ୍ନ ॥

ମନ୍ତ୍ର ସୁମରଣା ସାର ଏରୂପ ଦର୍ଶନ ।
ଗୋପୀ ଗୋପାଳ କରଣ ଅଟନ୍ତି ପ୍ରମାଣ ॥

ସେ ବସ୍ତୁ ଗୋଷ୍ଠିକେ ଗୋପୀ ଗୋପାଳ ଯେ ଛିଏ ।
ଘଟେ ଘଟେ ଲୀଳାକର ଗୁପତେ ଯେ ରହେ ॥ ୯ ॥

ଗୁପତୁଁ ଗୁପତ ଏ ଯେ ଗୁରୁଙ୍କର ସାର ।
ଉତ୍ତମ ଶିଷ୍ୟ ଜାଣନ୍ତି ଏଥିର ବିସ୍ତର ॥

ମାଘମାସ ଏକଦଶୀ ଫଗୁଣ ବୈଶାଖ ।
ସୁଦଣ୍ଡ ତଥି ଯେ ପଢ଼ିଥିବ ଭଲ ଯୋଗ ॥

ଶୀତଳ ମଣୋଜ୍ଞ କର ବସ୍ତ୍ର ଫୁଲ ପନ ।
ଶିଷ୍ୟଙ୍କୁ ଗୁରୁ ଯେ ପୂଜି କରାଇ ଦର୍ଶନ ॥

ତେବେ ଶିଷ୍ୟ ଜୀବର ମୋକ୍ଷଗତି ପାଏ ।
ଏ ଭେଦ ନ ଜାଣି ଗୁରୁ ଶିଷ୍ୟ କରୁଥାଏ ॥

ଶିଷ୍ୟର ସଂଶୟମାନ ନ ଯାଇ ହୃଦରେ ।
ବାତ୍ୟେ ଯେସନ୍ତେ ନାବ ଘାସି ବୁଲଇ ନଦୀରେ ॥ ୧୦ ॥

ଯନ୍ତ୍ର ମନ୍ତ୍ର ତନ୍ତ୍ର ଛାୟା ଆଦି ଯେ ଅବାଙ୍ଗ ।
ଗୁରୁ ଶିଷ୍ୟ ଜାଣିଲାର ଭଜୁଥିବ ଦୃଢ଼ ॥

ଶ୍ରୀ ଅବାଢ଼ାୟ ନମଃ ସୁମରଣା କରି ।
ସକଳ ପାତକ ଯିବ ମନ୍ତ୍ରକୁ ସୁମରି ॥
ମୁକୁନ୍ଦ ସହାସ ଶୁଣ ଅନନ୍ତ ପ୍ରଧାନ ।
ମଥୁରୀ ସୁଦାମ ମନେ ହେତୁ କର ଜ୍ଞାନ ॥
କଳିକାଳ ଘୋଟିବ ଯେ ଏ ଘୋର ସଂସାର ।
ପଢେ ଅଧେ ଶିଖି ଗୁରୁ ହୋଇବେ ଅପାର ॥

ପେଟର ନିମନ୍ତେ ଘରେ ଘରେ ଫେରୁଥିବେ ।
ବସ୍ତ୍ର ପଟ୍ଟ ନିମନ୍ତେଣ ଗୁରୁ ବୋଲାଇବେ ॥ ୧୫ ॥
ଅମେଧ୍ୟ ଆହାରକରି ବଡ଼ପଣେ ବାନ୍ଧି ।
ପାଦାନ୍ତ ଗୁରଙ୍କ ଚଢ଼ି ହୋଇବେ ଅନ୍ଧ ॥
କୁକୁର ମାଙ୍କଡ଼ ଶୁଆ ପକ୍ଷୀକୁ ପୋଷିବେ ।
ନିଜର ଧର୍ମ କରିବେ ହାଲ୍ଲିକ ଏଢ଼ାଇବେ ॥

ସତ୍ୟଯୁଗେ ମୁନିମାନେ ସ୍ୱଜସ ଏଢ଼ିଲେ ।
ତ୍ରେତାଯୁଗେ ଫଳ ମୂଳ ଖାଇଣ ବଞ୍ଚିଲେ ॥
ଦ୍ୱାପର ଯୁଗରେ ବନେ ରକ୍ଷି ବସ୍ତ୍ରା ଗାଈ ।
[illegible] ।
ଶ୍ରୀଚୈତନ୍ୟ ନାମ [illegible] ଯେତେ ଯେତେ [illegible]
ଚୈତନ୍ୟ କରୁଣା ଯେ ତୁମ୍ଭଙ୍କୁ ଛନ୍ତି ଜାଣ ॥ ୨୦ ॥

ବାର ଗୋପ ସାନ ସରେ ଅଟ ତୁମ୍ଭେ ସାର ।
ତୁମ୍ଭରେ ଉଚ୍ଛନ୍ନ ହେବ ଓଡ଼ିଶା ସଂସାର ॥
ତୁମ୍ଭ ଶିଷ୍ୟଗଣ ଶିଷ୍ୟ ହୋଇବେ ବହୁତ ।
ତ୍ରିଶ ପୁର ଜଗତେ ଉଗତ ତୋଷ ଚନ୍ଦ୍ର ॥
ପୂର୍ବର ବାସନା ଥିଲା ନୀଳାଚଳେ ଗଲି ।
ସିଂହଦ୍ୱାରଠାରେ ପ୍ରଭୁ ଚୈତନ୍ୟ ମିଳିଲ ॥
ମୁକୁନ୍ଦ ଅନନ୍ତ ପିତା ତାଙ୍କ ପାଦେ ପଡ଼ି ।
ଖୋଳ କରତାଳ ଯେ ତୁମ୍ଭଙ୍କୁ ଦେଲେ ଜେଡ଼ି ॥

ପୂଜା ସେବା କରି ତାଙ୍କୁ ସନ୍ତୋଷୀ ହୋଇଲେ ।
ଏବାଳକମାନଙ୍କୁ ସେ ଦୟା ହେବ ଭଲେ ।। ୨୯ ।।

ମଥୁରା ସୁଦାମ ପିତା କହିଲେ ବୁଝାଇ ।
ଗୋବିନ୍ଦ ବସ୍ତ୍ରଙ୍କ ପିତା ସ୍ତୁତ ପୁଣ କହୁ ।।
ଏମନ୍ତ କରି ଝଙ୍କଡ଼ ସଂରତା ମଣ୍ଡଳେ ।
ତୁମ୍ଭେ ଲୀଳା କର ଏବେ ବାର ଗୋପମେଳେ ।।

ଏମନ୍ତ ବୋଲିଣ ରାମ କହିଥିଲ ମୋରେ ।
ମୋର ଚିତ୍ତ ରହିଥିଲା ତୁମ୍ଭ ରାସଠାରେ ।।
ଏଣୁକରି ବଇଶାଖ ମାସେ ଅଣାଇଲୁ ।
ତୁମ୍ଭଙ୍କୁ ଦେଖିଣ ସେ ବହୁତ ସୁଖୀ ହେଲୁ ।।
ଗୋପକୂଳ ହୁଙ୍କାର ସେ ଘରେ ଘରେ ମିଳି ।
ପୂର୍ବ ପଦ୍ଧ ବନ୍ଧୁଲେଖା କୁଟୁମ୍ବ ଗଙ୍ଗେଲି ।। ୩୦ ।।

ଆମ୍ଭପୁର ଅଂଶବୋଲି ତୁମ୍ଭରେ ମିଶିବେ ।
ମାଳ ସେ ତିଳକ ବସ୍ତ୍ର ଖୋଲ ବଜାଇବେ ।।
କରତାଳ ହସ୍ତରେ ବାଇ ରାସଲୀଳା ନାଇ ।
ନାଚିବେ ସେ ଅଂଶମାନ ବହୁତ ସେ ହୋଇ ।।

ଅନ୍ତରର ଶିଷ୍ୟ ରାମ ଭକ୍ତ ବେନଜନ ।
ରାମ ଭକ୍ତ ସୁତ ତୁମ୍ଭେ ବାର ମହାଜନ ।।
ହରିର ନର୍ତ୍ତକ କରି ସଂସାର ଉଦ୍ଧାର ।
ଶ୍ରୀ କୃଷ୍ଣର ଲୀଳା ଯେତେ ଦେଖନ୍ତୁ ସଂସାର ।।
ଷାଠିଏ ଦଣ୍ଡ ସେ ଅଷ୍ଟ ପ୍ରହର ସଙ୍ଗୀତ ।
ତୁମ୍ଭଙ୍କ ଉବାର ନାହିଁ ବାନାର ବଳେ ତ ।। ୩୧ ।।

ଶୂଦ୍ରକୁଳେ ନପଟେ ଜନମ ଆମ୍ଭେ ହୋଇ ।
ତୁମାନ ଜନମରେ ଗୋପେ ଜନ୍ମ ହେଲୁ ତହିଁ ।।

କଳିଯୁଗ ମଧ୍ୟେ ତୁମ୍ଭେ ଆମ୍ଭେ ଏକ ମତ ।
ନୀର କ୍ଷୀର ଯେମନ୍ତ ଅଟଇ ଅଭେଦତ ।।

ସ୍ୱାମୀ ନାରୀ ପିତା ପୁତ୍ର ଯେମନ୍ତ ପୀରତି ।
ଭାବ ଗୋପମୁଖ୍ୟ ଅଟ ଆତ୍ମର ଯେ ପ୍ରୀତି ॥
ଆଦି ଅନାଦି କାନ୍ତୁ ଗୋପର ଭିଆଣ ।
ଭକ୍ତ ଚେତାପନା କାର୍ଯ୍ୟ ଅକାର୍ଯ୍ୟରେ ପୁଣ ॥

କଳିଯୁଗେ କୃଷ୍ଣ କଥା ଅଟଇଟି ସାର ।
ଦାନ ଅଚ୍ୟୁତ କହନ୍ତି ଶିଷ୍ୟଙ୍କ ଆଗର ॥ ୪୦ ॥

ଗୁରୁଭକ୍ତିଗୀତା ଯେ ଦ୍ୱିତୀୟ ଖଣ୍ଡ ରସ ।
ନବମ ଛାନ୍ଦ କହିଲି ଶୁଣି ହୁଅ ତୋଷ ॥ ୪୧ ॥

ଇତି ଶ୍ରୀ ଗୁରୁଭକ୍ତିଗୀତାୟାଂ ଦ୍ୱିତୀୟ ଖଣ୍ଡେ ଗୁରୁଶିଷ୍ୟ ବୋଧନେ
ଜ୍ୟୋତିବଧି କଥନେ ନାମ ନବମ ପଟଳଃ ।



# ଦଶମ ପଟଳ

ମୁକୁନ୍ଦ ଅନନ୍ତ ବସ୍ତ୍ର ବାଳକ ମଥୁର ।
ଜ୍ୟୋତିଷାନନ୍ଦ ମୂରତି କେମନ୍ତେ ସୁମର ॥
ପଞ୍ଚରୁ ବାର ଗୋପାଳ କହୁବା ପ୍ରମାଣ ।
ଶ୍ରୀଗୁରୁ ପରମଗୁରୁ କହୁ ପଗଛନ୍ତି ॥
ଶୁଣି ଚନ୍ଦଗଡ ପ୍ରେମେ ବହୁଇ ଲୋତକ ।
ରାମଚନ୍ଦ୍ର ଶିଷ୍ୟ ପୃଚ୍ଛି ବଡ଼ ଆଚମ୍ବିତ ॥
କୋଟିକେ ଗୋଟିଏ ସାନ୍ଧ୍ୟା କରନ୍ତି ପ୍ରମାଣ ।
ଏଥି ଅନ୍ୟ ନାହିଁ ଗତି କଲେ ସୁମରଣ ।
ସଦଗୁରୁ ମିଳିଲେ ସେ ଦ୍ୱାର ମାରଦେଇ ।
ସେ ସ୍ଥାନ ଚହ୍ନାଇ ତାକୁ ଦଅନ୍ତି ଦେଖାଇ ॥ ୯ ॥

କହୁନା ଚନ୍ଦ୍ରର ପୁଅ! ଶୁଣ ଏକମନ ।
ରାମ ଭ୍ରଥଠାରୁ ପଇଅଛ ବାରଜଣ ॥
ସଂଶୟ ଫିଟିବା ପାଇଁ ଆମ୍ଭଙ୍କୁ ପୁଛିଲ ।
ମନର ସଂଶୟ ଯିବ ଭଲ ବାସ୍ତବଲ ॥
ମାଘ ବୈଶାଖ ଭାଦ୍ରବ ଯଦ୍ଧ ବା ଫଗୁଣ ।
ଶୁକଲ ପକ୍ଷ ହୋଇବ ଉତ୍ତମ ବାରେଣ ॥
ଏ ମାସମାନଙ୍କେ ପୂଜାବିଧି ସେ ଯେ କର ।
ଗୁରୁ ଶୁକ୍ର ସୋମବାର ବୁଧ ସେ ବାସର ॥
ତାର ଚନ୍ଦ୍ର ଯୋଗମାନ ଉତ୍ତମ ବୁଝିବ ।
ଏମାନ ବୁଝିଣ ଯେ ଯେ ଦର୍ଶନ କରିବ । ୧୦ ।

ଧରଣୀ ସ୍ତବରେ ତାଙ୍କ ମନ ଦୃଢ଼ ହେବ ।
ଏମାନ ବୃଟି ଦେଖିଲେ ଉତ୍ତମ ଯେ ହେବ ॥

ଉଦେ ସୂର୍ଯ୍ୟ ପରି ଏକା ଦଶେ ଯାର କାନ୍ତି ।
ସେରୂପ ଦର୍ଶନକଲେ ପାପ ଘୁଞ୍ଚିଯାନ୍ତି ॥

ଝିଂଟକ ବିଜୁଳିପରି ଦିଶଇ ଯେ ଜାଣ ।
ଦର୍ଶନ ମାତ୍ରକେ ପୂର୍ବପାପ ଯେ ଖଣ୍ଡନ ॥

ଦଗଧ ସୁବର୍ଣ୍ଣପ୍ରାୟେ ଆବର ଦିଶନ୍ତି ।
ଦରଶନେ ବୃଷଳୀ ପାତକ ନାଶ ଯାନ୍ତି ॥

କାନଶ୍ରୀ ପୁଷ୍ପର ପ୍ରାୟେ ଦିଶଇ ଯେ ବର୍ଣ୍ଣ ।
ଦେଖିଲେ ମାତୃହରଣ ଦୋଷ ଯେ ଖଣ୍ଡନ । ୧୫ ।

ଏମନ୍ତେଣ ଅଷ୍ଟାଦଶ କଳା ଯେ ଅଟଇ ।
ଅଷ୍ଟଗୋଟି ରୂପେ ଅଷ୍ଟ କୋଟି ପାପ ଦହି ॥

ଏ ରୂପ ନ ଚିହ୍ନି ବଡ଼ ହୋଇବେ ମହନ୍ତ ।
ମାର ଧର ବାନ୍ଧରେ ଯେ ହୋଇବେ ମମତ ॥

ବନ୍ଧା ନଟ ନ ପାଇଣ କଉଡ଼ିରେ ଚିତ୍ତ ।
ଏ ବୃଦ୍ଧି ବସ୍ତୁଟିଲେ ଯେ ନ ମିଳିବ ସ୍ୱତ ।

ପାପ ନ ଛେଦଣ ପାପ ପଦାର୍ଥ ଭକ୍ଷିବେ ।
ତେଣୁକରି ପୁନି ନାଥ ଲକ୍ଷ୍ମୀହୀନ ହେବେ ॥

ସତ ଶାନ୍ତି ଦୟା କ୍ଷମା ନ ଧରିବେ ଚିତ୍ତ ।
ଘୃତ ଦୁଧ ଭୋଗ ଭୁଞ୍ଜି ପେଟ ବଢ଼ ମତ । ୨୦ ।

ଏମନ୍ତ ଜନରଠାରେ ଯେ ସାଧନା କରି ।
ଜ୍ୟୋଢ ଭଜନକୁ ଭୋଗ ଅଟଇ ବଇରୀ ॥

ଅଳପ ଭୋଗ ଭୁଞ୍ଜିଣ କ୍ଷୀଣ ହୁଏ ଦେହ ।
ପବନେ ପକ୍ଷୀ ଭଜିଲେ କରଇ ଯେ ସ୍ନେହ ॥

ଘଲକେ ପଲକେ ଲକ୍ଷ ଲଗାଇଣ ଥାଇ ।
ଏମନ୍ତ ଅଙ୍ଗେଣ ପାପ ଦୃଷ୍ଟି ଯାଉଥାଇ ॥

ଶୁଣ ହୋ ଚବଣ ଗୋପ ଗୋବିନ୍ଦ ମଥୁର ।
ନିରନ୍ତରେ ସାଧୁଥିବ ଏହିରୂପ ସ୍ମର ॥

କଳିଯୁଗେ ଏ କଥାରେ ନ ବଳିବ ଚିତ୍ତ ।
ଗୁପତେଣେ ଥିବେ ଗ୍ରାମେ ଗ୍ରାମେ ଏକମତ । ୨୫ ।

ମନ୍ତ୍ର ଜପମାଳ କର ଦମ୍ଭପଣେ ଥିବେ ।
ଅଙ୍ଗୁଷ୍ଠ ଭେଦ ନ ଜାଣି ତର୍ଜନୀ ଭଜିବେ ॥

ଅଭକ୍ଷ୍ୟ ଭକ୍ଷିଣ ହିଂସା ବଢ଼ୁଥିବେ ଚିତ୍ତେ ।
ଗୁରୁଶିଷ୍ୟ ମନ୍ତ୍ର ଶାସ୍ତ୍ରେ ନୋହିବେ ନିଜିତେ ॥

ଗୁରୁମାନେ ଭଜୁଥିବେ ବସନ କଉଡ଼ି ।
କଉଡ଼ି ନ ଦେଲେ ଶିଷ୍ୟ ଦେବେଟି ପାହୁଡ଼ି ॥

ଦ୍ୱାରେ ଦ୍ୱାରେ ଗୁରୁ ବୁଲୁଥିବେ ନିରନ୍ତରେ ।
ନ ଥିଲା ଶିଷ୍ୟ ଲୁଚିବ ବଣର ଭିତରେ ।

ଗୁରୁଙ୍କ ଲୋଭ ହୃଦୟ ଶିଷ୍ୟ ଜାଣି କରି
ମନେ ବିଗୁଣିବ ଗଲେ ପକାଇବେ ମାରି । ୩୦ ।

ହସ୍ତେ ପଣେ ନାହିଁ ମୁଣ୍ଡି କାହୁଁ ଦେବ ପୁଣ ।
ଏଣୁ କରି ଗୁରୁଶିଷ୍ୟ ହେବେ ରଣଭଣ ॥

ନଷ୍ଟ ଭ୍ରଷ୍ଟ ହୋଇ ଧର୍ମ ପଥ ଯେ ବୁଡ଼ିବ ।
ଭେକରେ ବହୁତ ପୁଣ କଳଙ୍କ ଲାଗିବ ॥

ତୁମ୍ଭେ ବାର ଗୋପ ମୋର ବିଶ୍ୱାସ ପ୍ରଧାନ ।
ଠାକୁର ଅଙ୍କରେ ତୁମ୍ଭେ ଜାତ ବାରଜଣ ॥

ସାକ୍ଷାତରେ ଶ୍ରୀ ଚୈତନ୍ୟ କଲ ଦରଶନ ।
ଚୈତନ୍ୟ ମଣ୍ଡଳୀ ନୀଳାଚଳ ଯେ ଭୁବନ ।

ଆମ୍ଭର କରୁଣା ପୁଣ ହୋଇଲା ତୁମ୍ଭରେ ।
ଅଚ୍ୟୁତ କହିଲେ ଯାହା ଗୁପତ ଛନ୍ଦରେ ॥ ୩୫ ॥

ପ୍ରକାଶ କଲେ ବିପତ୍ତି ଦରିଦ୍ର ଯୋଗ ହୁଏ ।
ବିଡ଼ମ୍ବଣ ଅପବାଦ କୁଷ୍ଠ ହୋଏ ଦେହେ ॥ ୩୬ ॥

ଇତି ଶ୍ରୀଗୁରୁଭକ୍ତିଗୀତାୟାଂ ଦ୍ୱିତୀୟ ଖଣ୍ଡେ ଗୁରୁଶିଷ୍ୟବୋଧନେ
କଳି ବ୍ୟବହାର କଥନେ ନାମ ଦଶମ ପଟଳଃ ।



# ଏକାଦଶ ପଟଳ

ସହଜ ସମାଧିସ୍ଥିର କହିଲ ପ୍ରମାଣ ।
ସ୍ଥିରହେବା ସମାଧି ପୁଣ କହିବା ଲକ୍ଷଣ ॥
ପ୍ରେମମାନ ପୁଲକିତ ହରଷେଣ ଚିତ୍ତ ।
ରାମଚନ୍ଦ୍ର କହ କଥ ପଦ୍ମରେ ତୋ ସୁତ ॥

କରପଦ ଯୋଡ଼ିଣ ଯେ ରାମଚନ୍ଦ୍ର କହ ।
ପଞ୍ଚଶକ୍ତ ବକତା ଯେ ଶ୍ରୋତା ତିନ ଦେହି ॥
ପଞ୍ଚରଙ୍ଗ ଆନନ୍ଦ ମୁକୁନ୍ଦ ବୃନ୍ଦାବନ ।
ଅନନ୍ତ ମଥୁର ବାସ୍ତ ଗୋବିନ୍ଦ ପବନ ॥
ଶ୍ରୋତା ଅଙ୍ଗ ରାମ ଭୃଷ ବନ୍ଧ କୃଷ୍ଣ ଦାସ ।
ଧରମୁ ଦକ୍ଷିଣ ଚନ୍ଦ୍ର ବେଦ ଯେ ପାରୁଣ ॥ ୯ ॥

ବକତା ଅଙ୍ଗ ଧରଣ ଶ୍ରୀ ଅଚ୍ୟୁତ ତୁମ୍ଭେ ।
ତୁମ୍ଭେ ଯାହା କହିବ ଯେ ବୁଝାଇବୁ ଆମ୍ଭେ ॥
ଏ ଗୋପଜନ କହିବେ ବୁଲିଣ ସଂସାରେ ।
ଅଭେଦମାନ ଗ୍ରହିଣ ଏହାଙ୍କ ସଙ୍ଗରେ ॥

ରାମଚନ୍ଦ୍ର ବାକ୍ୟ ଶୁଣି କହ ମନତୋଷେଣ ।
ଚବିଶ ଗୋପାଳ ତୁମ୍ଭେ ସାବଧାନେ ଶୁଣ ॥
ଚଉଥରୁ ଛଅରୁ ଯେ ଦଶରେ ମିଶିବ ।
ଦଶକୁ ନେଇଣ ଦ୍ୱାଦଶରେ ମେଳାଇବ ॥

ଦ୍ୱାଦଶ ମେଳିବ ପୁଣ ଷୋଳ ଭୁବନରେ ।
ଷୋଳକୁ ରଖିବ ବ୍ରହ୍ମ ଅଷ୍ଟ ଯେ ଆନରେ ॥ ୧୦ ॥

ସ୍ଥିର ରହିବ ଯେ ବଳକଳ୍ପଣୀ ଠାବରେ ।
ଦ୍ୱାଦଶ ଫେଣା ରହିବ ଘଣ୍ଟାନାଦ ଠାରେ ॥

ଘଣ୍ଟାନାଦଠାରେ ଶିଶୁମୁନାରେ ଛନ୍ଦିବ ।
ଜପ ଜପ ଦଣ୍ଡେ ଦଣ୍ଡେ ସାଧନ କରିବ ॥

ବାର ବର୍ଷର ଯେ ଏ ସାଧନା ଯେ କରି ।
ସାନକାଳେ ଗୁରୁଠାରେ ଥିବ ସେ ପଶ୍ଚରି ॥

ଅଭିଳେ ଆସଇ ଜୀବ ନଭିଲେ ନ ଆସେ ।
ଦ୍ୱାରମାନ ଜଗିଆଛନ୍ତି ଏଣୁ ଅଂଶେ ଅଂଶେ ॥

ମରଣ କାଳ ଜାଣିଣ ସେହୁ ପଥେ ଯାନ୍ତି ।
ଜୀବ ଥିବାଯାକେ କିଛୁ କିଛୁ ସାଧିଥାନ୍ତି ॥ ୧୬ ॥

ଏ ଭକ୍ତି ଯୋଗ ଯେ ସାଧେ ତାକୁ ସାଧୁ କହୁ ।
ଏହା ଯେ ନ ସାଧେ ସେହୁ ଭୁଲି ମରୁଥାଇ ॥

ଗତି ନ ପାବନ୍ତି ସେହୁ ମରଣ କାଳେଣ ।
କଫ ବାତେ ମନ୍ତ୍ର ଜପ ଲୁହ୍ଵଇଟି ପୁଣ ॥

ଏ ସାଧନା ଲାଗୁ କରି ମୃତ୍ୟୁ ଯେବେ ହୋଏ ।
ଲେଉଟିଣ ସାଧୁଘରେ ଜାତ ହୋଉଥାଏ ॥

ପାଞ୍ଚ ଯେ ବରଷଠାରେ ମନ୍ତ୍ର ଶିଖିଇବ ।
ଦଶ ଯେ ବରଷଠାରେ ଯନ୍ତ୍ର ବୁଝାଇବ ॥

ପନ୍ଦର ବରଷଠାରେ ତନ୍ତ୍ରକୁ ଶିଖିବ ।
କୋଡ଼ିଏ ବରଷଠାରେ ସାଧନାକୁ କହୁ ।
ପଚିଶ ବରଷଠାରେ ଗୁପ୍ତରୂପ ଧ୍ୟାନ୍ତି ॥

ଜ୍ୟୋତି ଦେଖାଇବ ପୁଣି ତିରିଶ ବରଷେ ।
ପଞ୍ଚତିଂଶ ଠାବରେ ସେ ସମାଧି ପ୍ରବେଶେ ॥

ହଜବାର ଗମିବ ଯେ ଚାଳିଶ ବରଷେ ।
ରସ ଗୁଣ କହୁଥିବ ମୃତ୍ୟୁ ପରବେଶେ ॥

ଅଷ୍ଟକାଳ ଷାଠିଏ ଦଣ୍ଡେ ତନ ଧୂପ ଜାଳ ।
ପଞ୍ଚ ଧୂପ ନଇବେଦ୍ୟ ଭଗତର ଖେଳା ॥

ଶ୍ଳୋକ

ସତ୍ତ୍ୱଂ ମତ୍ତ୍ୱଂ ତତ୍ତ୍ୱଞ୍ଚୈବ ତ୍ରୁଟ୍ୟା ଜ୍ୟୋତିରବାଙ୍ମନଃ
ଦ୍ୱିଜ ସମାଧି ରସଗୁଣଂ ଚ ଯୋଜାନାତି ସ ବୈଷ୍ଣବଃ ।
ଏ ଅଷ୍ଟଗୁଣ ନ ଜାନାମି ମନୁ ନ ହରେ ସଂଶୟଃ ।
ସର୍ବ ଶାସ୍ତ୍ର ଅନ୍ଧକାର ସଗୁଣନିର୍ଗୁଣଃ ସଦା ॥
ଶୁଣ ଆହେ ଗୋପସୁତ ଭକତିର କଥା ।
ସଗୁଣ ନିର୍ଗୁଣ ଦୁଇ ଯେବଣ ବ୍ୟବସ୍ଥା ॥ ୨୬ ॥
ଦୁଇ ଯେ ଡେଣାରେ ପକ୍ଷୀ ଉଡ଼ିକରି ଯାଇ ।
ଦୁଇ ଯେ ଚକ୍ଷୁରେ ଯେହ୍ନେ ସଂସାରେ ଖେଳଇ ॥
ଏକ ଯେ ନ ଥିଲେ କଣା ଦୁଇଗଲେ ଅନ୍ଧ ।
ଏଣୁ କରି ନିର୍ଗୁଣ ସଗୁଣ ଯେହ୍ନେ ଭେଦ ॥
ସତ୍ତ୍ୱ ମତ୍ତ୍ୱ ତତ୍ତ୍ୱ ରାମ ଏହି ଚାରି ଗୁଣ ।
ସଗୁଣ ଯାହାକୁ ବୋଲେ ଏହି କଥା ଶୁଣ ॥
ତ୍ରୁଟ୍ୟା ଅବାଙ୍ମ ଜ୍ୟୋତି ଯେ ଏହିଟି ସମାଧି ।
ଏ ଚାରି ନିର୍ଗୁଣ ବୋଲି ପାଶଲେଟି ସାଧି ॥

ବୋଲି ବାଣୀରେ ଗାଇବ :—

ଗୁରୁ ଶିଷ୍ୟ ଯେବେ ଏହା ନ ଜାଣି ।
କଣା ବୋଲି ଶାସ୍ତ୍ରେ ତାକୁ ବଖାଣି ॥ ୩୦ ॥

ଦୁଇ ନ ଜାଣିଲେ ଅଟଇ ଅନ୍ଧ ।
ଗୀତା ଭାଗବତ ପୁରାଣ ବେଦ ॥
ବ୍ରହ୍ମଚେତା ସାଧୁ ପଣ୍ଡିତ ଜନେ ।
ଏହା ବୁଝିଣ ଯେ ବାନ୍ଧଇ ମନେ ॥
ଧନ ଦାରା ସୁତପଣ ଛାଡ଼ିଲେ ।
ରାମ ଚରଣେ ସେ ମନକୁ ଦେଲେ ॥

ଗୁରୁ ପରମ ଗୁରୁ ଆଶ୍ରେ କରି ।
ନିସ୍ତାର ପଦକୁ ଅଛି ଆବୋରି ॥

କୃଷ୍ଣ ରସ ଗୁଣ ଗୁଣ୍ଣ ଶ୍ରବ ।
ତତ୍ତ୍ୱ ଭଜନ ମନରେ କରିବ । ୩୫ ।

ଆପଣ ତରିବ ପରେ ନିସ୍ତାର ।
ବାରଟିଆ ଗୋପ ଗୋପାଳ ସାର ॥

ସନ୍ଧାସେ ମିଶିବେ ଯେତେକ ଜନ ।
ତାଙ୍କର ଗୁରୁ ତୁମ୍ଭେ ବାର ଜଣ ॥
ତୁମ୍ଭ ଶିକ୍ଷା ପାଇ ହୋଇବେ ଦାସ ।
ତୁମ୍ଭ ଦେଲ ଅଂଶରାସେ ପ୍ରବେଶ ॥

ପାଞ୍ଚ ଗୋପାଳ ସୁତ ଗୋପଧରେ ।
ଏ ଅଂଶ ବଢ଼ିବ ନିରନ୍ତରେ ॥
ମୂଢ଼ ସଙ୍ଗତେ ବୁଦ୍ଧି ଭ୍ରମ ହେବ ।
ନୀଜ ଗୁଣ ଭକ୍ତି ବଢ଼ି ହୋଇବ । ୪୦ ।

ଆପଣା କରଣି ରହିବ ନାହିଁ ।
ତତ୍ତ୍ୱ ଭଜନରେ ମନ ନ ଦେଇ ॥
ତୁମ୍ଭ ଅଂଶେ ସର୍ବେ ରୂପେ ମଜ୍ଜିବେ ।
ଭଜନ ଭାବରେ ରହିବେ ସର୍ବେ ॥
ବୃନ୍ଦାବନ ଗ୍ରାମ କର ଘୋଷଣ ।
ଅଚ୍ୟୁତର ପଣ କହିଥ ଜାଣ ॥

ଗୁରୁଭକ୍ତ ଗୀତା ଦ୍ୱିତୀୟଖଣ୍ଡ ।
ଏ ଗ୍ରନ୍ଥ ଅଟଇ ଅମୃତ କୁଣ୍ଡ ॥
ଗୁପତୁ ଗୁପତ ଅଟଇ ଯେହୁ ।
ଗୃହେ ଥିଲେ ଧନ ଜନ ବଢ଼ଇ । ୪୫ ।

ଇତି ଶ୍ରୀ ଗୁରୁଭକ୍ତଗୀତାୟାଂ ଦ୍ୱିତୀୟଖଣ୍ଡେ ଗୁରୁ ଶିଷ୍ୟ ବୋଧନେ ସଗୁଣ ନିର୍ଗୁଣ ସମ୍ବାଦ ଯୋଗ କଥନେ ନାମ ଏକାଦଶ ପଟଳଃ ।

---

# ଦ୍ୱାଦଶ ପଟାଳ

କଥାଏ ପୁଚ୍ଛିବା ଗୁରୁ କହିବ ବୁଝାଇ ।
ତନ୍ତ୍ରର ବସ୍ତୁର ପ୍ରଭୁ କେମନ୍ତ ଅଛଇ ॥
ଗୁରୁଦେବ ରାମଚନ୍ଦ୍ର ବାର ଗୋପାଳର ।
ରାମଚନ୍ଦ୍ର ଗୁରୁକଲେ ତୁମ୍ଭ ଯେ ଠାବର ॥

ଆମ୍ଭର ଯେ ଅଜା ଗୁରୁ ପୁଣ ତୁମ୍ଭେ ହୁଅ ।
ତୁମ୍ଭ ଶିଷ୍ୟ କହିଲେ ଯେ ଫିଟିବ ସଂଶୟ ॥
ରାମ ଭ୍ରଥ ଦୁଇଗୁରୁ ଗୃହାସରେ ସାର ।
ଆଉ ଦଶ ଶିଷ୍ୟଙ୍କର ନାହିଁ ଅଧିକାର ॥

ଧର୍ମ ବସ୍ତୁ ବନ୍ଧ ମୂର୍ତ୍ତି ସେ ଗୋପାଳଙ୍କର ।
ଗୃହାସ ସାଧନ ଶିଷ୍ୟ ନାହିଁ ତାହାଙ୍କର । ୫ ।

ଗୃହାସ ଦାସଙ୍କ ସ୍ୱତ ବସ୍ତୁ ବନ୍ଧ ଦୁଇ ।
ମୂର୍ତ୍ତି ଶିଷ୍ୟ ତାହାଙ୍କର ଗମିବେ ନେଇ ମଣ୍ଡା ।
ଆମ୍ଭେମାନେ ସର୍ବେ ଦେଶ ଦେଶକେ ଭ୍ରମିବୁ ।
ଲୋକମାନେ ପଚାରିଲେ ବୃତ୍ତାହୁଣ ଥିବୁ ॥

ଶ୍ରୀଗୁରୁ ପରମ ଗୁରୁ ଶୁଣିଣ ଆନନ୍ଦ ।
ଭଲ ପଚାରିଲ ତୁମ୍ଭେ ବସ୍ତୁଗଣ ଭେଦ ॥
ରାମ ଭ୍ରଥ ମୁକୁନ୍ଦ ଅନନ୍ତ ତୁମ୍ଭେ ଚାରି ।
ବୃନ୍ଦାବନେ ଥିଲ ତୁମ୍ଭେ ସଖା ଅଙ୍ଗ ଧରି ॥
ଲୋକତ ଗୁରରେ ଗୁରୁଶିଷ୍ୟ ହୋଇଅଛ ।
ସାନ ଶାଖା ମୁକୁନ୍ଦ ବଡ଼ ଶାଖା ସେ ରାମ ବସ୍ତୁ । ୧୦ ।

ଭ୍ରଥ ସାନ ଶାଖା ବଡ଼ ଶାଖା ମୁଁ ଅଚ୍ୟୁତ ।
ଆମ୍ଭଙ୍କୁ ଲୋକତାରଣେ କୃଷ୍ଣ କଲେ ଜାତ ॥

ଖୋଳ କରତାଳ ଦେଇ ଥୋକେ ତୁମ୍ଭେ ତାର ।
ଖୋଳ କରତାଳ ଗୁରୁ ଅଟ ତୁମ୍ଭେ ବାର ॥
ତୁମ୍ଭଙ୍କୁ ନ ପୂଜି ଯେହୁ ରାହାସେ ପଶିବ ।
ସେ ଅଣଗୁରୁଆ ହେ ରାହାସେ ନ ମିଶିବ ॥
ନୀଳାଚଳ ଶ୍ରୀ ଚୈତନ୍ୟମଣ୍ଡଳୀରୁ ଆସି ।
ତୁମ୍ଭ ପିତାମାନେ ଖୋଳ ଶିଖାଇଲେ ପୁଣି ॥
ରାମଚନ୍ଦ୍ର, ମହୋତ୍ସବେ ତୁମ୍ଭଙ୍କୁ ବରିଲୁ ।
ତୁମ୍ଭ ରାସଲୀଳା ଦେଖି ହରଷ ହୋଇଲୁ । ୧୯ ।

ଥୋକେ ଗୋପାଳଙ୍କୁ ତୁମ୍ଭେ ରାହାସେ ମିଶାଅ ।
କେହୁ ଗୋପାଳଙ୍କୁ ତୁମ୍ଭେ ତତ୍ତ୍ୱରେ ବୁଝାଅ ॥
ଯତ୍ନମ ନ କେହୁ ଗୋପାଳଙ୍କୁ ଶିଖାଇବ ।
ମନ୍ତ୍ରମାନ କେହୁ ଗୋପାଳଙ୍କୁ ବୁଝାଇବ ॥

ଜ୍ୟୋତିବ୍ରହ୍ମ ମୂରତି କେବଳ ଗୋପାଳ ।
ସ୍ଥୂଳମୂର୍ତ୍ତି ଦର୍ଶନ କରିବ ହୃଦମୂଳ ॥
ଅବାଙ୍ଗ ମୂରତି କେ ବା କରିବ ଦର୍ଶନ ।
ସମାଧି ନିଷ୍ଠଲେ କେହୁ କରିବେକ ପୁଣ ॥
ଅଷ୍ଟ ଯେ ପ୍ରହର ରସଗୁଣ ଯେତେ ହୋଏ ।
ରାହାସର ବିଧି ଯେତେ ପ୍ରମାଣରେ କହେ ॥ ୨୦ ॥

ଦିନ ଧୂପ ପାଞ୍ଚ ଅବକାଶ ସ୍ୱେ ରାହାସେ ।
ଏହା ଜାଣିଲେତ ଯୋଗୀ ରାହାସରେ ମିଶେ ॥
ସନ୍ଧ୍ୟାଠାରୁ ପ୍ର ତଯାଏ ତାଙ୍କ ଲୀଳାମାନ ।
ପ୍ରାତଠାରୁ ସନ୍ଧ୍ୟା ଯାଏ କରି ଉପାସନ ॥
ଏହୁ ଲୀଳାମାନଙ୍କରେ ଗାଉଥିବ ଗୀତ ।
ତେଣୁ କରି ରସ ଗୁଣ ବୁଝିବ ତୁମ୍ଭେ ତ ॥
ପରମ ଗୁରୁ ବଚନ ଶୁଣି ବାର ଦାସ ।
ମୁକୁନ୍ଦ ଅନନ୍ତ ସେ ସେ ଶୁଣିଣ ହରଷ ॥

ଅକାର ଆକାର ଅଂଶ ସୃଜିଲ ଏ ଦେହ ।
ଦୁଇ ଅଂଶ ମୂର୍ତ୍ତି ନାନା ମୂର୍ତ୍ତିରୂପ ହୁଅ ।। ୨୯ ।।
ଅକାର ଉକାର ଯେ ଏକାର ବେଢ଼ି ପୁଣ ।
ଉକାର ଉପରେ ଯାଇ ଅଂକାର ଧାରଣ ।।
ଅଂକାର ବେଢ଼ିଲ ପୁଣ ମଣ୍ଡଳ ଦଶଏ ।
ମଣ୍ଡଳରୁ ବାହାର ଗାର ହୋଇଲ ଗୋଟିଏ ।।

ସେ ଗାରରୁ ଅଙ୍କ ଗାର ହୋଇଲା ଦୁଅଂଶ ।
ତିନି ଗାର ତହିଁ ତଳେ ହୋଇଛି ପ୍ରମାଣ ।।

ତିନିରୁ ଏକ ଆପଣ ଅନେକ ହୁଅଇ ।
ଚାରି ପୁର କରି ସ୍ଥାନ ନବାଢ଼ିଲ ସେହି ।।
ଚାରି ଅଂଶ ପୁଣି ରଖି ତହିଁ ସେ ଚଳିଲେ ।
ଛଅ ପୁର କରିଣ ଯେ ପୁର ନବାଢ଼ିଲେ ।। ୩୦ ।।

ଦଶ ପୁର କରି ତହିଁ ରଖିଲେକ ଥାନ ।
ଛଅ କଳା ରଖି ତହିଁ ଚଳିଲେ ଯତନ ।।
ଦଶ ସ୍ୱରୂପ ରଖିଣ କଲେକ ଗମନ ।
ଦ୍ୱାଦଶ ପୁର ରଚିଲେ ହୃଦୟ ଭୁବନ ।।
ଦ୍ୱାଦଶ କଳା ରଖିଣ ଗମନ ପୁରୁଷ ।
ଅଷ୍ଟରନ୍ଧ୍ରେ ପ୍ରମାଣ କଲେକି ଏକ ଦେଶ ।।

ନାଚକ ନ ଥିଲ ପ୍ରାଏ ଦସ ଜନ ଅଟଇ ।
ବିବେକୀ ଜନ ନ ଥିଲେ ପଢ଼ିରୁଣ ଥାଇ ।।
ତାଙ୍କ ମୁଖ ବାକ୍ୟ ଶୁଣି ମନ ଯାଏ ମିଶି ।
ଏ ତତ୍ତ୍ୱମାନଙ୍କେ ଆତ୍ମେ ପଢ଼ୁଁଛୁଁ ପଶି । ୩୧ ।

ଏଣୁକରି ତୁମ୍ଭେମାନେ ଏ ଅଷ୍ଟ ଯେ ଗୁଣ ।
ଶିଷ୍ୟରେ ବୁଝାଇ କହ ମୁକୁନ୍ଦ ଯେ ପୁଣ ।।

ଅନନ୍ତ ବସୁ ଗୋବିନ୍ଦ ମଥୁରା ସୁଦାମ ।
ଗୁପତ ଅଟଇ ଏହୁ ଗୁରୁଙ୍କର ଧର୍ମ ।।

କଳିକାଳ ଘୋର ହେବ ବୈଷ୍ଣବେ ମମତ୍ତ ।
ଧନ ବଡ଼ପଣରେ ଯେ ଦେଉଥିବେ ଚନ୍ଧ ।।
ରାଜସ କର୍ମ୍ମ କରିବେ ସାତ୍ତ୍ୱିକ ଛାଡ଼ିବେ ।
ପଦାତି ତୁରଙ୍ଗ ଚଢ଼ି ଦେଶରେ ବୁଲିବେ ।।
ନର ନାରାୟଣଠରେ ଚଢ଼ିବେ ବୈଷ୍ଣବ ।
ନଷ୍ଟ ହେବ ତାଙ୍କର ଯେତେକ ପୁଣ୍ୟ ଥିବ ।। ୪୦ ।।

ହସ୍ତିରେ ଚଢ଼ିଲେ ହରିନାମର ଭଜନ ।
ନଷ୍ଟ ହେବ ପୁଣ୍ୟ ଧର୍ମ୍ମ ନ ମିଳିବ ଅନ୍ନ ।।
କମଳ କଠାଉ ଛନ୍ଦ ତରାସ ବାଖଣି ।
ପାଦରେ ଗମିଲେ ଦାସ ଭଗତରେ ଗଣି ।।
ପଦାତି ତୁରଙ୍ଗେ ଗମେ ଯେବଣ ଯେ ଦାସ ।
ବୈଷ୍ଣବ ନୁହନ୍ତି ସେ ଯେ ରାଜସ ରାକ୍ଷସ ।।
ଦେହ କ୍ଷୀଣ ନ କଲେ ତ ନୁହଇ ସାଧନ ।
ସଂଯମ ଭଜନେ ସେ ନୋହନ୍ତି ଖାରଜନ ।।
ସଂଯମ ଭଜନ ଯେହୁ ଦାସ ନ କରଇ ।
ଧାନର ମଧ୍ୟରେ ଯେହ୍ନେ ଅଗାଡ଼ି ଅଛଇ । ୪୫ ।

ସଂଯମ ଜାଣିଲୁ ଦାସ ପାଚିଲାର ଫଳ ।
ଲେଉଟି ଭକତ ବୀଜ ହୁଅଇ ନିଷ୍ଫଳ ।।
ଗୀତା ଭାଗବତେ ଏହୁ କଥାଟି ପ୍ରମାଣ ।
ଗାଇ ବୁଝି ନ ପଶନ୍ତି ନ ରମନ୍ତି ଜନ ।।
ଗୁରୁ ମୁଖେ ବୁଝିଥିଲେ ଦଶେ ଝଳହଳ ।
ଉଜ୍ଜ୍ୱଳ ଦର୍ପଣେ ଯେହ୍ନେ ମୁଖର ସୁଢ଼ାଳ ।।

ଆର ପିଠି ଦପଂଣରେ ମୁଖ ନ ଦଶଇ ।
ଉତ୍ତମ ମଧ୍ୟମ ସେ ଯେ ଦର୍ପଣର ଦୁଇ ।।
ଉତ୍ତମ ଗୁରୁ ପାଇଲେ ସଂସାର ସନ୍ତୋଷ ।
ଦ୍ୱିତୀୟ ଖଣ୍ଡେ ଏ ଗୁରୁଭକ୍ତିରେ ଲେଖନ ।। ୫୦ ।।

ଗୁପ୍ତଗୀତା ଏ ଯାକ ଅତ୍ୟନ୍ତ ବଚନ ।
ଗୁପ୍ତ କରି ଶୁଣୁଥିବ ତୁମ୍ଭେ ବାର ଜଣ ॥
ଏ ଗ୍ରନ୍ଥକୁ ଅନ୍ୟ ଶିଷ୍ୟେ ନ ଦେବରେ ବାରୁ ।
ରାମଚନ୍ଦ୍ର ଦାସ୍ୟାସରେ କହିଦେଲୁଁ ସବୁ । ୫୬ ।

ଇତି ଶ୍ରୀ ଗୁରୁଭକ୍ତି ଗୀତାୟାଂ ଦ୍ୱିତୀୟ ଖଣ୍ଡେ ଗୁରୁଶିଷ୍ୟ-
ବୋଧନେ ଅନାଦି ମନ୍ତ୍ର ତନ୍ତ୍ରଭେଦ କର୍ତ୍ତବ୍ୟ ବର୍ଣ୍ଣନେ
ନାମ ଦ୍ୱାଦଶ ପଟଳଃ ।



## ତ୍ରୟୋଦଶ ପଟଳ

ମୁକୁନ୍ଦ ଅନନ୍ତ ସେ ମଥୁରା ସୁଦାମରେ ।
କହିବା ଗୁପତ କଥା ଶୁଣସି ଶ୍ରୁତରେ ॥
କ୍ଷଣେ ଦଣ୍ଡ ନିମିଷେଣ ବସିଣ ସାଧିବ ।
ଷଷ୍ଠ ପ୍ରହରକଠାରୁ ନିଦ୍ରାକୁ ତେଜିବ ॥

ଆହାର ଭୋଜନ ପୁଣ କରିବ ଅଳପ ।
ନାଭିଠାରୁ ମେରୁଦଣ୍ଡ କରିବ ସଳଖ ॥

ତେବେ ସେ ଜାଣିବା ଭକ୍ତ ସାଧନା ସ୍ୱେ ଦେହ ।
ତ୍ରିଭଙ୍ଗୀ ମୂରତି ସାଧନାରେ ହେଉ ଥିଅ ॥
ଶ୍ୱେତ ରଙ୍ଗ ଶ୍ୟାମଳ ହରିତ କଳା ପଞ୍ଚ ।
ନୀଳ ଜ୍ୟୋତି ମଧ୍ୟେ ବାଳ ମୁକୁନ୍ଦ ରୂପଞ୍ଚ ॥ ୫ ॥

ବାଳର ସହସ୍ର ଭାଗ ଏକ ଭାଗ ପ୍ରାୟେ ।
ଏମନ୍ତ ମୂରତି ଚିହ୍ନି କରିବ କେ ଥୟେ ॥
ତାହାଙ୍କ ଜ୍ୟୋତିରୂପକୁ ସାଧୁଜନ ଧ୍ୟାୟି ।
ଏ ଭବସାଗରୁ ତରିଯାନ୍ତି ତାଙ୍କ ବୁଦ୍ଧି ॥

ଏଣୁକରି ନୟନରେ ଲୟେ ଦୃଷ୍ଟି ଥିବ ।
ଏମନ୍ତ ଗୁରୁଚରଣେ ଶିରକୁ ଟକିବ ॥

ବ୍ରହ୍ମା ଶିବ ଯୋଗିମାନେ କୋଟି ଯୁଗ ଧ୍ୟାୟି ।
ଖୋଜି ନିଶି ଦିବସରେ ନ ପାଇଲେ ସେହି ॥

କୋଟିକେ ଗୋଟିଏ ଭକ୍ତ ଚିହ୍ନନ୍ତି ସେ ପୁଣ ।
ବାସନା ଛିଡ଼ି ହୋଇଲେ ପଶନ୍ତି ଶରଣ ॥ ୧୦ ॥

---

୧-୨ ସାବଧାନ ଧୀରେ—କ, ଖ

ସାଧନା ଯୋଗରେ କରିଥିବ ପରମାଣ ।
ପରମ ତୋଳି ଯେ ସ୍ଥାନେ ଲଭିବ ମରଣ ॥
ତେବେ ସେ ରହ୍ୱାସଦାସ ଜାଣିବ ପ୍ରତ୍ୟକ୍ଷ ।
ଶୂନ୍ୟ ରହ୍ୱାସେ ମିଳିଲେ ତେବେ ହେବ ମୋକ୍ଷ ॥
ବୃନ୍ଦାବନ ରହ୍ୱାସ ମୁକୁନ୍ଦ ପିତା ଶୁଣ ।
ଅନନ୍ତ ମଥୁରା ପିତା ରାଜ ସେବାପୂର୍ଣ ॥
ସୁଦାମ ଗୋବିନ୍ଦ ବସ୍ତ୍ର ପିତାମାନେ ବଡ଼ ।
ରାଜ୍ୟରେ ପ୍ରତ ପ ଦେବ ସେବାରେ ନିଗୂଢ଼ ॥
ଚୈତନ୍ୟ ପ୍ରଭୁଙ୍କଠାରୁ ରାଜାଙ୍କ ଜଣାଇ ।
ଖୋଲ କରତାଳ ଦେଲେ ପୁରୁଷେନ୍ଦ୍ର ବନ୍ଧୁ ॥ ୧୯ ॥

ତହୁଁ ଆସି ତୁମ୍ଭେମାନେ ରସବାଧ୍ୟ କଲ ।
ଶୁଣିବାକୁ ଅଣିଲୁ ଯେ ନର ଏ କୁଣ୍ଡଳ ॥
ପଞ୍ଚସଖା ହେଲ ସଖା ନ ଜାଣ୍ଠ ଏ ରସ ।
ଶୂନ୍ୟ ରହ୍ୱାସରେ ଆମ୍ଭ ବଳିଲା ମୁହାଁସ ॥
ବୃନ୍ଦାବନ ଶୂନ୍ୟରସ ଦୁଇଙ୍କ ସାଧିଲ ।
ଗୋପାଳ ସୁତ ଯେ ତୁମ୍ଭେ କଥ ବୁଝାଇଲ ॥
ଗୋପାଳ କୁଳରେ ଖୋଲ କର୍ତ୍ତାଳ ଯେ ଧରେ ॥
ତୁମ୍ଭଙ୍କୁ ଦକ୍ଷିଣା ଦେବେ ବରଷ ଦିନରେ ॥
ତୁମ୍ଭଙ୍କୁ ନ ପୁଜି ଯେହୁ ରହ୍ୱାସ କରିବ ।
ଅନ୍ୟ ଯେ ରହ୍ୱାସଦାସ ତାହାକୁ ଗଣିବ ॥ ୨୦ ॥

ଜତ୍ୟ ରହ୍ୱାସେ ତୁମ୍ଭଙ୍କୁ ହୋଇଛୁ ପ୍ରାପତ ।
ଜତ୍ୟସ୍ଥଳେ ତୁମ୍ଭେମାନେ ହେଇଅଛ ଜାତ ॥
ଏଣୁ [illegible]ର ଗୋପାଳ ଯେ କୁଳକୁ ଉଦ୍ଧାର
ତୁମ୍ଭ ଶିଷ୍ୟଗଣ ମିଶି ହୋଇବ ନିସ୍ତାର ॥

---

୧୯-୨ ଅଙ୍କରେ—ଜ,ଖ ।

ଘନ ମୂର୍ତ୍ତି ନୀଳାଚଳେ ଜଗନ୍ନାଥ ଦାସ ।
ବୃନ୍ଦାବନ କୁଞ୍ଜବନେ ନନ୍ଦ ଗୋପଶିଷ୍ୟ ॥
ଶୂନ୍ୟପୁର ଜ୍ୟୋତମୂର୍ତ୍ତି ନିକୁଞ୍ଜର ପରେ ।
ଏହୁ ଘନ ମୂର୍ତ୍ତି ପୁଣ ବଖାଣ ସଂସାରେ ॥
ତୁମ୍ଭ ଅଂଶେ ଥୋକେ ଜନ ବାଦ ଯେ ଧରିବେ ।
ଧୂମ ମନ୍ଦିରରେ ଥୋକେ ତୁମର ମାତିବେ ॥ ୨୫ ॥

ଗଞ୍ଜା ଅଫୁ ଖାଇବେ ଯେ ମିତ୍ରରେ ମମତ ।
ଦୁଃଖ କଷ୍ଟ ନିରନ୍ତରେ ହେଉଥିବେ ଜାତ ॥
ପଞ୍ଚସଖା ଅନ୍ନେ ଥୋକେ ହେବେ ସନ୍ଥ ପୁଣ
ଥୋକେ ପୂଜ ହେଉବେ ନସେ ଦୁଷ୍ଟ ମୂଢ଼ ଜନ ॥

ଗୋପାଳ କୁଳକୁ ପୁଣ ଦଗଧ କରିବେ ।
ଘୃତ ଦୁଗ୍ଧ ଭୋଗକରି ଦେହ ବଢ଼ାଇବେ ॥
ଦ୍ୱନ୍ଦ ଛନ୍ଦ କରି ଧନ ଦେବେ କୁଟୁମ୍ବରେ ।
ସାଧୁସେବା ନ କରି ଦରିଦ୍ର ହେବେ ନରେ ॥
ମୁଁ ଜାର ପଣରେ ବଡ ହେଇବେ ଗୋସାଇଁ ।
କଉଡ଼ି ଲୋଭରେ ସେ ଯେ ବୁଲୁଥିବେ ମଣି ॥ ୩୦ ॥

ଅଚ୍ୟୁତ ଅଂଶରେ ଆମ୍ଭ ଘନ ପୀଢ଼ିଠାରେ ।
କିଛୁ ଚୂଡ଼ାମଣି ଥିବ ଗନ୍ଧର୍ବ ହୃଦରେ ॥
ବେନ ଅଂଶେ ଅଂଶେକ ଯେ ଗୁପତ ହୋଇବ ।
ଅଂଶକର ଅଂଶମାନେ ଗୁଡ଼ୁସ୍ତେ ବଢ଼ିବ ॥
ରାମଚନ୍ଦ୍ର ଠାରେ ଥିବ କିଛୁ ସୁଚତୁର ।
ଅବିବେକ ପୁଅ ଯେ ଜନ୍ମିବେ ସେ ବୀର ॥
ଘୃତ ଦୁଗ୍ଧ ଖାଇ କଡ଼ପଣେ ଥିବେ ମାତ ।
ତୁରଙ୍ଗ ଯାନ ଗମନେ ବଳଥିବ ମତ ॥

ଦ୍ୱନ୍ଦବାଦ କଳିଣ ଅଚ୍ୟୁତ ଗଣ୍ଠରେ ।
କଉଡ଼ି ଭାବରେ ସେ ଯେ ବୁଲିବେ ସଂସାରେ ॥ ୩୫ ॥

ବନ୍ଧା ଛନ୍ଦା ମାରଧର କରିବେ ସଂସାର ।
ନିଜ ଗଣମାନଙ୍କୁ ସେ କରିଦେବେ ଦୂର ॥
ମିଛୁଆ ମାହାନ୍ତ ମୁଣ୍ଡ ଗହଳ ସଙ୍ଗର ।
ବୁଲୁଥିବେ ଦେଶେ ଦେଶେ ଯେହ୍ନେ ଖଣ୍ଡସ୍ୱେର ॥
ଗୁରୁଶିଷ୍ୟମାନଙ୍କ ନୋହିବ ତେତେବେଳେ ।
କଚ୍ଛବନ ଦେଶରେ ଭ୍ରମିବେ ନିଜ ସ୍ଥଳେ ॥
ବହୁତ ଅଂଶର ଆତ୍ମ ବାଞ୍ଛିବ ଯେ ଗୋଳ ।
ଏକ ବୀର୍ଯ୍ୟ ଥିଲେ ମିନା ନୁହନ୍ତା ଯେ ଖଳ ॥
ବହୁ ବୀର୍ଯ୍ୟ ସଂସାରେ ବହୁତ ଗୋଳ ହୋଇ ।
ବହୁ ଭାଗ୍ୟେ ଏକବୀର୍ଯ୍ୟ ବଂଶ ଚିର ହୋଇ । ୮୦ ॥

ଶ୍ରୀକୃଷ୍ଣ କରୁଣା ଯେଣୁ ହୋଇଲା ମୋହର ।
ବ୍ରଜ ଗଦାଧର ପୁତ୍ର ହେବ ଏକ ମୋର ॥
ମୁକୁନ୍ଦ ତାହାର ବୀର୍ଯ୍ୟେ ଜନମ ହୋଇବ ।
କଚ୍ଛପାଠୁଁ ଯେଠାବରୁ ବେନି ଅଂଶ ହେବ ॥

ଯେଠବରୁ ବହୁ ପୁତ୍ର ପାପ ଗରାସିବ ।
ଦାସୀଅଙ୍ଗ ଛୁଇଁବାରୁ ବୀର୍ଯ୍ୟହୀନ ହେବ ॥
କଳିକାଳେ ଧାରଣ ନୋହିବ ସନ୍ଥ ପୁତ୍ର ।
ନିରନ୍ତରେ ସୁଖଭୋଗେ ମାତିଥିବ ଚିତ୍ତ ॥
ରାମଚନ୍ଦ୍ର ବୀର୍ଯ୍ୟେ ପୁତ୍ର ଗୋଲକୁଣ୍ଡା ହୋଇ ।
ଖଳବଳ ଲଗିଥିବ ନିଶ୍ଚଳ ନୁହଇ । ୮୫ ।

ବ୍ରହ୍ମ କ୍ଷତ୍ରୀ ବୈଶ୍ୟ ଶୂଦ୍ର ଗୋପାଳ ଯେ ପାଞ୍ଚ ।
ପଞ୍ଚ ଜାତି ସେ ପୁଣ ସଂସାରେ ହେବ ଶ୍ରେଷ୍ଠ ॥

ଏଣୁ କରି ଦାସୀ ଅଙ୍ଗ ଶୂଦ୍ର ନ ଛୁଇଁବ ।
ଛୁଇଁଲେଣ ବଡ଼ ଦୋଷ କୁଳ ନଷ୍ଟ ହେବ ॥
ରାଜେନ୍ଦ୍ର ଯୋଗେନ୍ଦ୍ର ବିଧି ଏମନ୍ତ ଅଛଇ ।
ମନ୍ତ୍ରଅଙ୍ଗ ରାଜେନ୍ଦ୍ର ଯୋଗେନ୍ଦ୍ର ଯତ୍ନ କରୁ ॥

ଶତମୁଖ ଦକ୍ଷିଣ ରାଜାର ହୋଏ ପ୍ରଜା ।
ଷଡ଼ ଅଙ୍ଗ ଧଇଲେ ଯୋଗୀନ୍ଦ୍ର ପାଏ ପୂଜା ॥
ସବଂଶେ ହରମଧ୍ୟ ଦେଖଇ ଯେମନ୍ତ ।
ତେବେ ସିନା ସଂସାରରେ ବୋଲନ୍ତି ମହନ୍ତ । ୫୦ ।

ନରଅଂଶ କେଭେ ଯେଣୁ ନ ମଣନ୍ତି ସନ୍ଥ ।
ଉତ୍ତମ ଆରମ୍ଭ ଶେଷେ ନ ବଳଇ ଚନ୍ଥ ॥

ନରକଣ୍ଠେ ଚଢ଼ିଲେ ଯେ ରାମ ନାମ ଜପ ।
ନିଷ୍ଫଳ ହୁଅଇ ତାଙ୍କ ଭଜନ ପ୍ରତାପ ॥
ଗଜ କନ୍ଧେ ଚଢ଼ିଲେ ଯେ କୃଷ୍ଣର ଭଜନ ।
ବୀଜ ନାଶ ହୁଅଇ ଚଢ଼ିଲେ ଶ୍ୱାନଯାନ ॥
ଏଣୁ କରି ଘୋଡ଼ା ହାତୀ ନରେ ନ ଚଢ଼ିବ ।
ରାଜସ ତାମସ ଭକ୍ତ ତାହାକୁ ଲେଖିବ ।
ମଲେଣି ସେ ନରଲୋକେ ଆତଯାତ ହୋଇ ।
ରାଜୁତ ସଧିତ ଘରେ ଜନମ ସେ ପାଇ । ୫୫ ।

ବୈଷ୍ଣବ ଚରଣ ରେଣୁ ଧାମ କ୍ଷେତ୍ରମାନ ।
ଏମ ନଙ୍କେ ସେହୁ ପୁଣ ନ ହୁଅନ୍ତି ଜନମ ॥
ଗୋଲୋକ ଆସ୍ମୂଧ ଘେନି ଭକ୍ଷା ମାଗୁଥିବ ।
କୀର୍ତ୍ତନ ମୁଖରେ କରି ସଂସାର ତରିବ ॥
ନାସିକା ପଥରେ ଗମି ନାମରେ ମଜ୍ଜିବ ।
ଅନ୍ତଦୃଷ୍ଟିରେ ନାମ ଧ୍ୟାୟି ଭ୍ରୂମଧ୍ୟେ ଜାଗିବ ॥
ନାମରେ ଯେ ବର୍ଣ୍ଣି ଚନ୍ଦ୍ରସୂର୍ଯ୍ୟର ପରସ୍ପେ ।
ଭାଗବତ ଗୀତାରେ ଏ ପ୍ରମାଣଟି ହୋଏ ॥
ହୁତାଶନ ପ୍ରାପ୍ୟେ ନ୍ୟୋ ଠ ଅଛଇ ଯେ ପୁଣ ।
ଶ୍ରୀଏକାଦଶେଣ ଏହୁ ଅଛଇ ପ୍ରମାଣ । ୬୦ ।

ଜନମଧ୍ୟେ ଜ୍ୟୋତରେ ଜନ୍ମିଲେ ନାମ ଜାଣି ।
ବେଦର ମଧ୍ୟରେ ସାର ଅଛେ ଏହୁ ପୁଣି ॥

ଆପଯୌର ମୁଣ୍ଡ ବ୍ରହ୍ମ ଭୁବ ଭ୍ରୂ ସ୍ଥାନ ।
ଗାୟତ୍ରୀ ମନ୍ତ୍ରରେ ବିପ୍ରେ କରନ୍ତି ଯେ ଧ୍ୟାନ ॥
ଏଣୁ ତୁମ୍ଭେ ନାମ ଯେ କୀର୍ତ୍ତନ କରୁଥିବ ।
ଆପଣେ ତରିବ ପରେ ନିସ୍ତାରି କରିବ ।
ଅଚ୍ୟୁତ ଚରଣେ ମୋର ଅଷ୍ଟ ବାର ଦାସ ।
ଦ୍ୱିତୀୟ ଖଣ୍ଡ ଏ ଗୁରୁଭକ୍ତି ଗୀତା ରସ । ୭୪ ।

ଇତି ଶ୍ରୀଗୁରୁଭକ୍ତି ଗୀତାୟାଂ ଦ୍ୱିତୀୟଖଣ୍ଡେ ଗୁରୁଶିଷ୍ୟ-
ବୋଧନେ ତନ୍ତ୍ରଭେଦ କଥନେ ବର୍ଣ୍ଣାନୁଚରିତେ ନାମ
ତ୍ରୟୋଦଶ ପଟଳଃ ।



# ଚତୁର୍ଦ୍ଦଶ ପଟଳ

ବିଷ୍ଣୁଦେବ ସଖାଗଣ ଯେନଣ ସଙ୍ଗେଣ ।
ନମସ୍ତେ ଶୁଣ ଅଛନ୍ତି ହରଷ ମନେଣ ॥
କହ ବିଷ୍ଣୁଦାସଗଣ ମନେ କି ସଂଶୟେ ।
ପୁଚ୍ଛିଲେ ପାଇବ କହି ଗୁରୁଙ୍କ ହୃଦୟେ ॥

ଗୁରୁଦେବ ବଚନେ ଉଠିଣ ଶିରେ କର ।
ବେଣ ଯେ ମୁରାରି ପୁଚ୍ଛେ ଗୁରୁଙ୍କ ଶ୍ରୀମୁଖ ॥
ବସ୍ତ୍ର ଯେ ମୁରାରି ପୁଣ ସଙ୍ଗତେ ଅଛନ୍ତି ।
ଭାଠି ଯେ ଗୋପାଳ ତାଙ୍କ ସନ୍ନିଧିରେ ଥାନ୍ତି ॥
ମାଧବ ଯେ ଦାସ ପୁଣ ଅଛନ୍ତି ସଙ୍ଗେଣ ।
ଯୁଧିଷ୍ଠି ଦାସ ଯେ ଶିରେ କର ଦେଇ ପୁଣ । ୫ ।

ନରସିଂହ ଗୋପାଳ ଯେ ହରଷ ଭାବରେ ।
ଗୋକୁଳଚନ୍ଦ୍ର ଅଛନ୍ତି ତାହାଙ୍କ ପାଖରେ ॥
ବଇଂଶୀ ଦାସ ଯେ ପୁଣ କେମନ ବଚନ ।
ହରିହର ବେଣ ଦାସ ହରଷ ଭାବେଣ ॥

ଭରଥଆ ହ.ଦାସ ଯେ କଥାର ବିସ୍ତର ।
ସାହାଣି ଗୋପାଳ ଦାସ ଅଛନ୍ତି ସଙ୍ଗର ॥
ପ୍ରେମା ଯେ ଗୋପାଳ ଦାସ ପ୍ରେମଭାବେ ରହେ ।
ଦ୍ୱାଦଶ ଗୋପାଳ ବିଷ୍ଣୁ ଦାସ ସଖା ବହେ ॥
ମନ୍ତ୍ର ଭେଦ କେମନ୍ତ ଅଟଇ ଗୁରୁବାଣୀ ।
ଭେଦିଲେ ଶିଷ୍ୟର ଅଙ୍ଗେ ଜ୍ଞାନ ଦୋଷ ପୁଣି । ୧୦ ।

ଶୁଣ ବିଷ୍ଣୁ ଦାସଗଣେ ମନ୍ତ୍ରଙ୍କର ମୂଳ ।
ପଞ୍ଚମନ୍ତ୍ର ସର୍ବମନ୍ତ୍ର ହୁଅନ୍ତି ଯେ ମୂଳ ॥

ଅକ୍ଷର ଏକାକ୍ଷର ଶ୍ୟାମ ପଞ୍ଚାକ୍ଷର ।
ତାରକ ହରେ ଯେ ରାମ ପଞ୍ଚମନ୍ତ୍ର ସାର ॥
ଅନନ୍ତ ଯୁଗର ମନ୍ତ୍ର ଅଣ ଯେ ଅକ୍ଷର ।
ସତ୍ୟଯୁଗେ ଏକାକ୍ଷର ମନ୍ତ୍ର ଅଟେ ସାର ॥
ତ୍ରେତୟା ଯୁଗରେ ପୁଣ ଅଟଇ ତାରକ ।
ଦ୍ୱାପର ଯୁଗରେ ଶ୍ୟାମପଞ୍ଚାକ୍ଷର ଲେଖ ॥
କଳିଯୁଗେ ହରିନାମ ଷୋଳ ଯେ ଅଟଇ ।
ସର୍ବମନ୍ତ୍ରମାନ ସେହୁ ଗର୍ଭରେ ଧରଇ ॥ ୧୯ ॥

ଷୋଳନାମୁଁ ଛନନାମ କଳିରେ ପ୍ରଚାର ।
ଚୈତନ୍ୟ ଠାକୁରେ ତାହା କଲେ ଯେ ବାହାର ॥
ହରେ କୃଷ୍ଣ ରାମ ଛନ ଯଥାରେ କହିଲେ ।
ତେର ନାମ ଗୁପତେଣ ଲୁଚାଇ ରଖିଲେ ॥
ଶ୍ୟାମ ପଞ୍ଚାକ୍ଷରୁ କଲେ ଅଠର ଅକ୍ଷର ।
ବ୍ରହ୍ମା ପୁଣି ନିଗମରୁ କଲେକ ବାହାର ॥
ତାରକ ମନ୍ତ୍ରକୁ କଲେ ଗାୟତ୍ରୀ ଯେ ଆଠ ।
ଏକାକ୍ଷରୁ ନାରାୟଣ ମନ୍ତ୍ର କଲେ ପାଠ ॥
ଅଣ ଯେ ଅକ୍ଷର ପୁଣ ମନ୍ତ୍ରଙ୍କର ମୂଳ ।
ତାରକ ଯେ ଏକାକ୍ଷର ଶ୍ୟାମ ଅଟେ ଡାଳ ॥ ୨୦ ॥

ଆଉର ଯେତେକ ମନ୍ତ୍ର ଡାଳ ଶାଖା ଜାଣ ।
ସବୁ ମୂଳମନ୍ତ୍ର ଅକ୍ଷର ପ୍ରମାଣ ॥
ହରେ ରାମ ମନ୍ତ୍ରରାଜ ଚୈତନ୍ୟ ଶ୍ରୀଗୁରୁ ।
ନୀଳାଚଳ ସାର୍ବଭୌମ ବୁଝିଲେ ସେଠାରୁ ॥
କୃଷ୍ଣମନ୍ତ୍ର ଦ୍ୱାପରେ ବୁଝିଲେ ସଖାଗଣ ।
କାମଗାୟତ୍ରୀ ଜପିଲେ ଯେତା ଭକ୍ତଗଣ ॥
ସତ୍ୟଯୁଗେ ପଞ୍ଚାକ୍ଷର କପିଳ ମୁରତି ।
ବୁଝିଲେ ସଙ୍ଗତେ ଥିଲେ ଯେତେ ମୁନି ଯତି ॥

ଯୁଗଳ ମନ୍ତ୍ର ଯେ ପୁଣ କଳିର ଭଗତ ।
ଚଇତନରୂପେ ଏକ ବୃନ୍ଦାଇ ଆପେତ ॥ ୨୫ ॥

ଠାକୁରାଣୀ ମନ୍ତ୍ର ଯେ ଦ୍ୱାପର ଯୁଗେ ଜପ ।
ତ୍ରେତାଯୁଗେ ରାମନାମ ଯେ ହେତାରେ ମହାଯୋଗ୍ୟ ॥
ଶୂନ୍ୟ ଯେ ଭଜନ ମନ୍ତ୍ର ସତ୍ୟଯୁଗେ ଯାର ।
ସଦଗୁରୁ ଜାଣନ୍ତି ଯେ ମନ୍ତ୍ରର ବିସ୍ତାର ॥
ଏମନ୍ତେଣ ଚତୁର୍ବର୍ଗ ମନ୍ତ୍ର ପୁଣ ଅଛି ।
ଚତୁର୍ବର୍ଗ ଯନ୍ତ୍ରକୁ ଯେ ଛନ୍ଦଣ ରଖିଛି ॥
ରାମ ଭକ୍ତ ଶିଷ୍ୟମାନେ ରାମଦାସ ପ୍ରଧାନ ।
ଅକିଞ୍ଚନ ଦଶ ତ ଧରିଲେ ହେତୁମନ ॥
କୃଷ୍ଣଦାସଗଣେ ତୁମ୍ଭେ ହେତୁ ମନେ ଧର ।
ପାଷାଣ୍ଡି ଗୋପାଳକୁଳେ ତୁମ୍ଭ ଅଧିକାର । ୩୦ ॥

କୃଷ୍ଣଗଣେ ନୁହନ୍ତି ତ ରାମଦାସର ଦାସ ।
ଦୀକ୍ଷା ଶିକ୍ଷା କର ତୁମ୍ଭେ କରାଇବ ଦେଶ ॥
ହନୁମାନ ପବନ ମଧୁ ମଥୁରା ଯେ ଦାସ ।
ନପୁଂସକ ଶରୀର ଯେ ଯତି ତାଙ୍କ ଅଂଶ ॥

ମୁକୁନ୍ଦ ଅନନ୍ତ ବଳ ସୁଦାମ ଗୋବିନ୍ଦ
ବାଳକ ଯେ ବୃନ୍ଦାବନ ଆଦର ଆନନ୍ଦ ॥
ଏମାନେ ଯେ ସପ୍ତ ଅଙ୍ଗ ଅଟନ୍ତି ଧାରଣ ।
ସପ୍ତ ଯତ ଅଙ୍ଗ ଧରି କଲେ ରାସ ପୁଣ ॥
ଧର୍ମଦାସ ବଳ କୃଷ୍ଣ ଭକ୍ତଗଣମାନେ ।
ସେବା କରିଥିବ ତୁମ୍ଭେ ରାମଦାସ ପଣେ ॥ ୩୫ ॥

କଳିଯୁଗେ ସଙ୍କୀର୍ତ୍ତନ ଭୁବନ ମଙ୍ଗଳ ।
ଦ୍ୱାପର ଯୁଗେ ରାସ ହରେ ଅମଙ୍ଗଳ ॥
ତ୍ରେତାୟା ଯୁଗରେ ତାଳ ମର୍ଦ୍ଦଳ ସୁଲଭ ।
ସତ୍ୟଯୁଗେ ନାରଦ ଯେ ବୀଣାରେ ପ୍ରସ୍ତବ ॥

ଖେମଟା ତାଳ ବଜାଇ ଉଚ୍ଚସ୍ୱରେ ଥାନ୍ତି ।
ଶ୍ରୀକୃଷ୍ଣଗୁଣ ଗାଇଣ ଆନନ୍ଦେ ନାଚନ୍ତି ॥
ଏ ଲୀଳାମାନଙ୍କୁ ଏହୁ ହୋଇଲେ ସ୍ୱଜନ ।
ଧନ ଜନ ପଣ ତେଜି ଉଦାସରେ ମନ ॥
ତୁମ୍ଭେ ବିଷ୍ଣୁଦାସ ଭକ୍ତଗଣମାନ ଯେତେ ।
ଆବୋରିଲ ଧନଜନ ପଣର ସଙ୍ଗତେ ॥ ୪୦ ॥

ମାୟାମୋହ ସଂସାରକୁ ତେଜି ନ ପାରିଲ ।
ଏଣୁକରି ସଂସାରରେ ବନ୍ଧନ ହୋଇଲ ॥
ଏବେ ସେ ନିସ୍ତାର ପଥ କହୁବା ତୁମ୍ଭରେ ।
ବରଷ ଦିନରେ କରି ମହୋତ୍ସବ ଥରେ ॥

ମାତାର ସମ୍ବନ୍ଧ ପିତା ସମ୍ବନ୍ଧ ନ ଥିବ ।
ସୁତକନ୍ୟା ଗୃହକନ୍ୟ କଳ୍ପଣା ନ ଥିବ ॥
ବାଡ଼ି ବୃତ୍ତି ଧନ ଆଶେ ନ କରିବ ମେଳେ ।
ନିସ୍ତାର ନୁହଇ ଏହୁ କଳ୍ପନା ଯେ ଥିଲେ ॥
ସେବେ ଭିକ୍ଷା କରି ତହୁଁ ମୁଠାଏ ରଖିବ ।
ବରଷ ଦିନରେ ତାହା କୃଷ୍ଣେ ସମର୍ପିବ ॥ ୪୫ ।

ଶିଷ୍ୟଠାରୁ ଦିନେ ଦିନେ ରଖି କିଛୁ କିଛୁ ।
ମହୋତ୍ସବ କୃଷ୍ଣଙ୍କବେ·ସାଧୁଗଣ ପୂଛି ॥
ଖୋଳ କରତାଳ ଦାସ ଏହାଙ୍କୁ ବରିବ ।
ଫୁଲ ପାନ ଚନ୍ଦନ ବସନମାନ ଦେବ ॥
ଏ ପଞ୍ଚସ୍ତବରେ ପୂଜି ଉଦାସର ଜନ ।
ମିଷ୍ଟାନ୍ନସବେ ମିଳିବ ଯେତେ ପୁଣ ଅନ୍ନ ॥

ପିଷ୍ଟ ଫଳମୂଳଜଳ ପାନ ଯେ ମିଳିବ ।
ଅଙ୍ଗରସେ ବସାଇଣ ଏହାଙ୍କୁ ପୂଜିବ ॥
ପିତାପୂର୍ବସ୍ୱଦ ତୃପ୍ତ ଶରଧା ବଳାଇ ।
ତେବେ ସେ ଉଦ୍ଧ ସଫଳ ପରାପତ ହୋଇ ॥ ୫୦ ।

କେବା ଚନ୍ଦନ ଗନ୍ଧ କରି ଦିନେ ଅଧିବାସ ।
ଦିନେକ ଯାତ୍ରା କରିବ ଦିନେ ଅଧିବାସ ॥
ଏମନ୍ତେଣ ଚନ୍ଦନ ଦିନ କେହୁ ପୂଣ କରି ।
ନ ଲାଗିବ କାଳତାପ ହୃଦରେ ଶୁମ୍ଭରି ॥

କେବା ପାଞ୍ଚଗନ୍ଧ କରି ଦିନେ ଅଧିବାସ ।
ଚନ୍ଦନଗନ୍ଧ ଯେ ଗନ୍ଧାସ ଦିନେ ଅଧିବାସ ॥
ପଞ୍ଚ ଯେ ପାତକମାନ ଖଣ୍ଡନ ହୁଅଇ ।
ବ୍ରହ୍ମହତ୍ୟା ଗୁରୁହତ୍ୟା ପାତକ ଖଣ୍ଡଇ ॥
ମାତୃ ଯେ ହରଣ ଭଗ୍ନୀହରଣର ଦୋଷ ।
ମଦିର ଖଣ୍ଡନ ପାପ ହୁଅଇ ବିନାଶ ॥ ୬୯ ॥

କେବା ସପ୍ତଗନ୍ଧ କରି ଦିନେ ଅଧିବାସ ।
ପଞ୍ଚଗନ୍ଧ ମହୋତ୍ସବ ଦିନେ ଅଧିବାସ ॥
ସନ୍ତାପ ତାପ ଯେ ତାଙ୍କ ଦେହେ ନ ଲାଗଇ ।
ଭଗତ ଦର୍ଶନେ ତାର ଶୋକ ଦେହୁଁ ଯାଇ ॥

ଅନ୍ନତାପ ପୂର୍ବତାପ ବିଷତାପ ମାନ ।
ରୋଗତାପ ଶତ୍ରୁ ତାପ ବିନାଶି ବନ୍ଧନ ॥
ନାନା କଷ୍ଟ ଶାନ୍ତ ହୁଏ ଭଗତ ଦର୍ଶନେ ।
ସପ୍ତ ଗନ୍ଧ ସୁଗନ୍ଧେ ଯେ ହୃଦେ ଧ୍ୟାନ କଲେ ॥

କେବା ନବଗନ୍ଧ କରେ ଦିନେ ଅଧିବାସ ।
ସପ୍ତଦିନ ମହୋତ୍ସବ ଦିନେ ଅଧିବାସ ॥ ୭୦ ॥

ନବଧା ଭକତିଫଳ ପ୍ରାପତ ହୁଅଇ ।
ସେ ଜନ ଦର୍ଶନ କଲେ ପାତକ ଦୂରଇ ॥
ଦର୍ଶନ ଭଗତି ପାଏ ଶ୍ରବଣ ଭଗତି ।
ବନ୍ଦନ ଭଗତି ପାଏ ଚରଣ ଭଗତି ॥
ସ୍ମରଣ ଭଗତିମାନ ଭଗତ ଲଭଇ ।
କୀର୍ତ୍ତନ ଭଗତି ତାଙ୍କୁ ପ୍ରାପତ ହୁଅଇ ॥

ଧର୍ମ ଅର୍ଥ କାମ ମୋକ୍ଷ ଚତୁର୍ବର୍ଗ ପାଇ ।
ଏ ଦ୍ୱାଦଶ ମହୋତ୍ସବ ଯେ ଜନ କରଇ ॥
ଧର୍ମ ତିନଦିନ ଫଳ ଅର୍ଥ ତିନ ଦିନ ।
କାମ ତିନ ଦିନ ଫଳ ମୋକ୍ଷ ତିନ ଦିନ ॥ ୬୫ ॥

ଧର୍ମ ଅର୍ଥ କାମ ମୋକ୍ଷ ଚତୁର୍ବର୍ଗ ପାଇ ।
ବୈଷ୍ଣବ ଚରଣ ପୂଜ ଅବଶେଷ ଖାଇ ॥
ଷୋଳଦିନ କରେ ଯେହୁ ମହୋତ୍ସବ ବିଧି ।
ସର୍ବଫଳ ପରାପତ ହୋଏ ତାଙ୍କ ସିଦ୍ଧି ॥
ପଞ୍ଚରାତି ତିନରାତି ସପ୍ତରାତି ଅବା ।
ଦ୍ୱାଦଶ ଦିନରେ ପୂଜା ଷୋଳରେ ଲଭିବା ॥

ଆଷାଢ଼ ମାସରେ ଯେହୁ ଶୁକ୍ଳ ପ୍ରତିପ ।
ଅଧିବାସ କରିବ ଶୁଣିଣ ମୋର ରୂପ ॥
ଚଉଦିନ କରେ ଯେ ମହୋତ୍ସବ ମୋର ।
ପ୍ରତିପଦ ଦିନ ଅଧିବାସର ବିସ୍ତର ॥ ୬୦ ॥

ଦ୍ୱାଦଶ ଦିନର ଫଳ ଶୁଣ ଶ୍ରୀ ବାହୁକା ।
ଅସ୍ତନ କରିଲେ ହୋଏ ଶସ୍ତନ ବାହୁତା ॥
ଚତୁର୍ଦ୍ଦଶୀ ଫଳ ଲଭେ ଏକାଦଶୀ ରାତେ ।
ବାହୁଡ଼ା ଯାପ ଦେଖନ୍ତି ଯେହୁ ଜନ ନେତେ ॥

ଏମନ୍ତେଣ ମହୋତ୍ସବ କର ରାସମାନ ।
ବାରଜନ ପୂଜା ଡ଼ମ୍ଭେ କରିବ ଭୋଜନ ॥
ଶୁନ ବୈଷ୍ଣବ ଦାସଗଣ ବନ୍ଦଦାସ ଗଣ ।
ଧର୍ମଦାସଗଣ ଶୁଣ ମହୋତ୍ସବ ଗୁଣ ॥
ବନ୍ଦଗଣ ଶ୍ୟାମଦାସ ହରିଦାସ କହେ ।
ଗୋକୁଳ ଦାସର ନରସିଂହର ବିନସ୍ତେ ॥ ୭୫ ॥

ବିନୋଦ ଦାସ ଯେ ଲକ୍ଷ୍ମଣ ଶ୍ରୀଧର ଗୋପାଳ ।
ଗୋପୀ ଦାସ ବଂଶୀଦାସ ମୋହନ ଶଙ୍କର ॥

ଏହୁ ବାର ଗୋପାଳର ମନର ସଂଶୟେ ।
ମାସ ଦିନ ମହୋତ୍ସବ ଉତ୍ସବ ଯୋଗାଏ ॥
ଶୁଣ ବନ୍ଦ ଦାସ ଗଣ ଭଲ ପଚ୍ଛିଲ ।
ଲକ୍ଷ୍ମୀ ଆ ଶ୍ରୀଧର ଦାସ ମନେ ହେତୁ କଲ ॥
ଉତ୍ସବ ସନ୍ଧିରେ ଯେବେ ଶିଷ୍ୟ ରଖେ ମନ ।
ଭକ୍ତଶିଷ୍ୟ ବୋଲି ସେ ବୋଲିବା ବିଦ୍ୟମାନ ॥
ଶୁଣ ବନ୍ଦଦାସ ଧର୍ମ୍ମଦାସ ରାଜ ଗୁଣ ।
ଭାଦ୍ରବ ମାସରେ ଜନ୍ମ ଅଷ୍ଟମୀ ସେ ଦିନ ॥ ୮୦ ॥
ଜଳପାନ ବିଧି ଦେବ ସଜାଡ଼ି କରଣ ।
ରାଜ ଉଜାଗରେ ଦୀପ ଜାଳିବ ସେ ପୁଣ ॥
ଦିବସେ ଭୋଜନ ଦେବ ନବମୀ ତିଥିରେ ।
ଅର୍ଦ୍ଧରାତ୍ରେ ଉତ୍ସବ କରିବ ମାନସରେ ॥
ଆଶ୍ୱିନ ମାସରେ ଦିନ କୁଆଁର ପୂର୍ଣ୍ଣିମା ।
ଅର୍ଦ୍ଧରାତ୍ରେ ମହୋତ୍ସବ କ୍ରମଶ୍ରେଣୀ ପୂର୍ଣ୍ଣି ॥
ରାତ୍ରରେ ଭୋଜନ ଦେଇ ପ୍ରଭାତେ ମେଲାଣି ।
ହେତୁଙ୍କର ଅଚ୍ୟୁତ ବଚନ ପରମାଣି ॥
ଦ୍ୱିତୀୟଖଣ୍ଡ ଯେ ଗୁରୁଭକ୍ତ ଗୁପ୍ତଗୀତା ।
* ଅଚ୍ୟୁତ ଯେ ପ୍ରଣିପାତେ ହୋଇ ବ୍ରହ୍ମଚେତା ॥ ୮୧ ॥
ଚତୁର୍ଦ୍ଦଶ ଛାନ୍ଦ ଏହୁ ମନ୍ତ୍ରଭେଦ ଜାଣି ।
ମହୋତ୍ସବମାନ ଏହୁ ଅଧ୍ୟାୟରେ ବଖାଣି ॥ ୮୨ ॥

ଇତି ଶ୍ରୀ ଗୁରୁଭକ୍ତ ଗୀତାୟାଂ ଦ୍ୱିତୀୟଖଣ୍ଡେ ଗୁରୁଶିଷ୍ୟ
ବୋଧନେ ମନ୍ତ୍ରାଦି ମହୋତ୍ସବ ବିଧିକଥନେ
ନାମ ଚତୁର୍ଦ୍ଦଶପଟଳ ।

---

* ପାଠାନ୍ତର—ଅଚ୍ୟୁତର ଗଣ ଯେତେ ସେମାନଙ୍କୁ ହିତା ।

## ପଞ୍ଚଦଶ ପଟଳ

ବେତ ଯେ ମୁରାର ଆଦ୍ୟ ଆନନ୍ଦ କହନ୍ତି ।
ବିନୟ ଭାବରେ ଗୁରୁ କରୁଅଛୁ ସ୍ତୁତି ॥
ଆବର ଯେତେକ ବିଧି ଅଛୁ ସେ ଯେ ପୁଣ ।
ପରମ ଗୁରୁଙ୍କ ମୁଖୁଁ ଶୁଣିବୁ ପ୍ରମାଣ ॥
ଶୁଣ ଆହେ ନାରଦମୁନି ବେତ ହେ ମୁରାରି ॥
କାର୍ତ୍ତିକ ମାସରେ ଯେ ସପତ ରାତ୍ର କରି ॥
ପଞ୍ଚରାତ୍ର କରିବ ଯେ ଫଗୁଣର ଦୋଳ ।
ରାମ ଯେ ନବମୀ କର ଚଇତର କାଳ ॥
ଦ୍ୱାଦଶ ଦିନ କରିବ ବୈଶାଖ ମାସରେ ।
ଶୁକ୍ଳପକ୍ଷ ହୋଇବ ଚନ୍ଦ୍ରର ବାସରେ ॥ ୫ ॥
ମଧ୍ୟରାତ୍ରେ କରିବ ଯେ ମାଘପୁଷ୍ପ ମାସେ ।
ମଧ୍ୟରାତ୍ରେ କରିବ ଯେ ଶ୍ରାବଣର ଶେଷେ ॥
ଦଶମୀ କାର୍ତ୍ତିକମାସ କର ଅଧିବାସ ।
ପଞ୍ଚଦିନ ମହୋତ୍ସବ ଦିନେ ଅଧିବାସ ॥
ଚତୁର୍ମାସ ଫଳ ଲଭେ ଏକାଦଶୀ ଦିନ ।
ପଞ୍ଚମାସ ଫଳ ଲଭେ ପୂର୍ଣ୍ଣିମୀ ଦିନେଣ ॥
ସପ୍ତାତ ପାପ ଖଣ୍ଡଇ ସପ୍ତମ ଦିନରେ ।
ସପ୍ତଦିନ ମହୋତ୍ସବ କରେ ଯେଉଁ ନରେ ॥
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୂଦ୍ର ବର୍ଣ୍ଣଜାତି ।
ପତିତ ଚଣ୍ଡାଳ ଯେ ଭିକ୍ଷୁକ ନାନାଜାତି ॥ ୧୩ ॥

---

୮—୧ ଚତୁର୍ବିଧ ଫଳ ଲଭେ—ଗ ।
୮—୨—ପଞ୍ଚବିଧି—ଗ । ପଞ୍ଚକର—ଘ ।

ଅଷ୍ଟାଦଶ ପାଟକ ଯେ ଯେତେ ଭେକ ବନ୍ଧୁ ।
ବୈଷ୍ଣବ ପ୍ରାପ୍ତ ପୂଜିବ ଯେ ଅନ୍ନପାଣି ଦେଇ ॥
ଛୁଦ୍ର କରି ପୂଜିଲେ ଯେ ସାତକୋଟି ପାପ ।
ମନ୍ତ୍ରୋଷ୍ଟବ କରଣୀରେ ଅଙ୍ଗ ହୋଏ ଗୋପ୍ୟ ॥
ସର୍ବଘଟେ ଜୀବରୂପେ ନାମ ନାରାୟଣ ।
ଆତ୍ମା ଚିହ୍ନି ଯେଉଁମାନେ କରେ ଅନ୍ନଦାନ ॥
ଅନ୍ନର କଣିକା ଯେତେ ଧ୍ରୁବ ସମ ଜାଣ ।
ବହୁତ ଅନ୍ନ ଯେ ବୋଲି ନ କର ପୂଜନ ॥
ତୁଳସୀର ପତର ଯେ ଅଟେ ପୁଣ ସତ ।
ସାନ ବଡ଼ ନ କରିବ ଯେତେ ଭେକଧାରୀ ॥ ୧୬ ॥

ବୈଷ୍ଣବମୂର୍ତ୍ତି ସାନ ବଡ଼ ନୁହଇ ଯେମନ୍ତ ।
ହରି ଆଗ୍ରେ କଳି ଲେକ ପୂଜିବ ତେମନ୍ତ ॥
ଅଛୁଦ୍ରେ ପୂଜିଲେ ପାଏ ପରମ ସୁଗନ୍ଧ ।
ଛୁଦ୍ର କରି ଭଜିଲେ ଯେ ପାପରେ ସଙ୍ଗନ୍ଧ ॥
ଧର୍ମଗଣ ବୈଷ୍ଣବଗଣ ବନ୍ଦଗଣ ଯେତେ ।
ରାମ ଭ୍ରାତ ଦ୍ୱାଦଶଙ୍କୁ ପୂଜିବ ଯେମନ୍ତେ ॥
ରାମର ଅଟନ୍ତି ଆଠ ଭ୍ରାତର ଯେ ଗୁରୁ ।
ଚଉଦଶ ଜଣରେ ଏହୁ ଅଟନ୍ତି ଅଧିକାରୀ ॥
ବ୍ରଜକୁଳେ ଅଧିକାରୀ ରାମଚନ୍ଦ୍ର ଦାସ ।
ସକଳ ଶିଷ୍ୟରେ ଯେହୁ ଆଗ ଉପଦେଶ ॥ ୨୦ ॥

ରାମର ଯେ ଶିଷ୍ୟ ଏଣୁ ବ୍ରଜକୁଳେ ସାର ।
ଭୁବନ ମଙ୍ଗଳ ଧ୍ୱଜ ଅଛି ତାଙ୍କ କର ॥
କରଯୋଡ଼ି ମୁକୁନ୍ଦ ଅନନ୍ତ ମଧୁ କନ୍ଦ ।
ଉତ୍ପନ୍ନ ନ ପବନ ଯେ ଗୋବିନ୍ଦ ବାଳକନ୍ଦ ।

---

୧୪—୨ ବହୁତ ଅନନ୍ତ=ସବୁ ପୋଥିରେ । ୧୬—୧ ସମପର=ସତ ।

ବସ୍ତ୍ର ସେ ଯାଦବ ବୃନ୍ଦାବନ ସେ ଆନନ୍ଦ ।
ମଥୁରା ମିଶିଣ ବାରଗୋଟି ଗୋପବୃନ୍ଦ ॥
ଗୁରୁଶିଷ୍ୟମାନଙ୍କର ଲାଗିଥିବ କଳି ।
ସ୍ୱଚ୍ଛମାନେ ନ ମିଳିବେ ଅନ୍ୟେ ଅନ୍ୟେ ମିଳି ॥
ପିତାଙ୍କୁ ପୁତ୍ର ନ ଯେନ କରୁଥିବେ ଘର ।
ଶଶୁର ଘରରେ ଯାଇ ହେବେ ପରଶ୍ୱନ ॥ ୨୫ ॥

ରଜାମାନେ ପାଷଣ୍ଡଙ୍କେ ସମ୍ଭ୍ରମ ନ ଦେବେ ।
ଖଟୁଆ ମିଛୁଆ ଲୋକେ ସିରପା ପାଇବେ ॥
ସତ୍ୟବନ୍ତ ଲୋକଙ୍କୁ ସେ ସଭାରେ ନ ଲେଖି ।
ଦୁଧ ନ ଦେବେଣ ଗୋରୁମାନେ ହେବେ ଦୁଃଖୀ ॥
ଅନ୍ତରତ କାଳରେ କି ସୁଖ ଭୋଗଥିବ ।
ଏଥିର ସନ୍ଦେଶ ଫେଡ଼ି କହ ଗୁରୁଦେବ ।
ଶୁଣ ବାରଟିଆ ଦାସ ଅଚ୍ୟୁତ ବଚନ ।
ଭବିଷ୍ୟ ଆଗତ କଥା ହେତୁ ମନେ ଘେନ ॥
ଜନ୍ମ ପୀଡ଼ା ତୁମ୍ଭର ସେ ସୁଖ ଭୋଗେ ଯିବ ।
ରାଜଦଣ୍ଡ ତାପମାନ ବହୁତ ଲାଗିବ । ୩୦ ॥
ବୃନ୍ଦାବନ ବାସୁଦେବ ବେଣୁଦାସ ଜନ ।
ମୁଁ ଅକ୍ଷରେ ତାପ ତାଙ୍କୁ ଲାଗିବ ସେ ପୁଣି ॥
ବାଲନର ଦାସ ଅଂଶେ ଗୋବିନ୍ଦ ସେ ପୁଣ ।
ବ ଅକ୍ଷରେ କିଛି ତାଙ୍କୁ ତାପ ଲାଗିବତ ॥
ଅନନ୍ତ ଅଂଶରେ ଜାତ ଭିଖାରୀ ଅଟଇ ।
ଖ ଅକ୍ଷରେ ବଳପୂର୍ବେ ଦାସ ତାପ ପାଇ ॥

ମୁକୁନ୍ଦ ଅଂଶରେ ଜାତ ହେବ ଭାଗୀରଥି
କଳ୍କି ନେଣ ନିରଞ୍ଜନ ଲେଖିଥିବ ପୋଥି ॥

ତଦଅଂଶେ ବ ଅକ୍ଷର କର୍ମ ତାପ ଭବସ୍ତୁ ।
ଘୋର କଳିତାପ ପୀଡ଼ା ଲାଗିବ ସମସ୍ତେ ॥ ୩୫ ॥

ଜଳଠାରେ ଶାସ୍ତ୍ର ଗ୍ରନ୍ଥ ରହିବ ଯେ ପୁଣ ।
ଗୁପତେ ରହିବ ଯାଇଁ ପାଶ୍ୱଦ୍ୱୀପେ ପୁଣ ॥
କଳିକାଳ ଭକ୍ତମାନେ ସେଠାରେ ଗୁପତ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ସେଠାରେ ଯେ ସ୍ଥିତ ॥
ଖେତ୍ରମାନ ଦେଖୁଥିବେ କଳିରେ ଗୁପତ ।
ଯେଉଁସ୍ଥାନେ ଭକ୍ତଛନ୍ତି ପାଶ୍ୱଦ୍ୱୀପେ ଜାତ ॥

ଚତୁର୍ଥ ପୀଢ଼ିକୁ ତାପ ତାହାକୁ ପଡ଼ିବ ।
ମୁକୁନ୍ଦର ସଙ୍ଗ ପୁଣ ଜନଙ୍କି ଦେଖିବ ॥
ପବନ ଉତ୍ଥାନ ତୃନ୍ତେ ବଇରାଗ ହୁଇ ।
ଏଥିରେ କ ତାପ ପୁଣ ଅଂଶ ଯହିଁ ନାହିଁ ॥ ୪୦ ॥

ମଧୁଦାସ ବୈରାଗ୍ୟ ତ ଏଥି ନାହିଁ ଅଂଶ ।
ବୃନ୍ଦାବନ ଦାସର ଦୁହିତା କୁଳେ ଅଂଶ ॥
ମଥୁରା ଦାସର ଜନ ପୁଅ ଭ୍ରାଥ ସୁତ ।
ମଥୁରା ଅର୍ଜ୍ଜୁନ ନାମ ଗୋପାଳ ବିଦିତ ॥

ଏ ଜନ ପୀଢ଼ିରେ ସେହୁ ନ ଅକ୍ଷରେ ତାପ ।
ଭବିଷ୍ୟର କଥା ଏହୁ ଅଟଇଟି ଗୋପ୍ୟ ॥
ସୁଦାମ ଅଂଶରେ ଜାତ ଚନ୍ଦନ ମୋହନ ।
ବଂଶୀଧର ଅଂଶେ ସ୍ୱ ଅକ୍ଷରେ ସେହୁ ପୁଣ ॥

ବସ୍ତ୍ର ଅଂଶେ ବାସୁଦେବ ବନମାଳୀ ଜାତ ।
ଭଟତର ଥିଲକାଳ କଳି ଯେ ପୀଡ଼ିତ ॥
ଯାଦବ ଯେ ହଳଧର ଅପରନ୍ତ ସୁତେ ।
ହି ଅକ୍ଷରେ ତାପ ପୁଣ ଲଗିବ ସେ ସୁତେ ॥

ଗୋବିନ୍ଦ ଦାସର ଅଂଶେ ଯାଦବ ଯେ ହୋଏ ।
ବ-କ୍ଷରେ ତାପ ଲଗିବ ସେ ଗୋପର ପୋଏ ॥

---

୪୩—୧ :—ଅ ଅକ୍ଷରେ—ଗା, ଅଣକ୍ଷରେ—ଜ

ଆନନ୍ଦ ଅଂଶରେ ଜାତ ଭଗବାନ ସୁତ ।
କୃପାସିନ୍ଧୁ ସୁତେ ତାପ ଲଗିବ ପୀଡ଼ିତ ॥

ଜଲୁବନ ତୁମ୍ଭେମାନେ ସ୍ୱସଲ୍ଲନା କର ।
ନତାଂସ୍ଥଳେ ତୁମ୍ଭର ଯେ ରହିବ ଶରୀର ॥
ମହାନଦୀ କୂଳେ ସ୍ଥାନ ବାଙ୍କେଣି କୁଦେଶ ।
ଜଙ୍ଘର ବଂଶେକେ ମୃତ୍ୟୁ ମୁକୁନ୍ଦ ଯେ ସ୍ଥାନ ॥ ୫୦ ॥
ଚନ୍ଦ୍ରସ୍ୱର ତଟରେ ଯେ ଜଙ୍ଘର ବଂଶରେ ।
ବାଲିଗ୍ରୁ ନଗରେ ମୃତ୍ୟୁ ଅନନ୍ତ ସେଠାରେ ॥
ଜଙ୍ଘର ବଂଶରେ ବଧ ଗଙ୍ଗାତଟେ ସ୍ଥାନ ।
ଶୁଙ୍ଗୁଡ଼ା ଗ୍ରାମରେ ଯେ ଯାଦବର ମରଣ ॥

ପୀତାମ୍ବର ପୁରେ ଖଣ୍ଡି ବଂଶେ ଢେଙ୍କା ଗ୍ରାମ ।
ମରଣ ଲଭିବ ତୁମ୍ଭେ ଆନନ୍ଦ ସୁଦାମ ॥
ବଚ୍ଛ ଯେ ଗୋବିନ୍ଦ ଦୁଇ କୋଠଦେଶ ସ୍ଥଳେ ।
ସ୍ୱର୍ଗଙ୍ଗା ତଟରେ ଥିବ ତୁମ୍ଭେ ଦୁଇ ଜଣେ ॥

କ୍ଷେତ୍ରବର ନୀଳାଚଳେ ବାଙ୍କି ମଠକୋଣେ ।
ପବନ ମଥୁରା ତୁମ୍ଭେ ରହ ଦୁଇଜଣେ । ୫୫ ।
ଭଟୁଆ ଗ୍ରାମରେ ଚନ୍ଦ୍ରଦ୍ୱାର ଯେ ସେ ସ୍ଥାନ ।
ସେ ସ୍ଥାନେ ସମାଧି ହୁଅ ତୁମ୍ଭେ ଯେ ହତ୍ୱାନ ॥
ମଧୁ ବୃନ୍ଦାବନ ରହ ଜଙ୍ଘର ବଂଶରେ ।
ରୂପ ଚଡ଼ିଆ ବୋଲିଣ ଗ୍ରାମ ତାକୁ ବୋଲେ ॥

ଥାନେ ଥାନେ ତୁମ୍ଭର ଯେ ରହୁ ଅଂଶ ମାନ ।
ଗୋପାଳେ ଶିଖିବେ ଖୋଲ କରତାଳ ପୁଣ ॥
ଶୁଣ ଖୋଲ ଦାସ ତୁମ୍ଭେ ବାରଗୋଟି ଜନ ।
ସ୍ୱର ପୀଠ ଯାଏ ଏଥି ଶୁଭ କ୍ଷେତ୍ରମାନ ॥

---

୫୨—୨ :—ଶଙ୍ଖଗଡ଼ା—କ, ଗ ।

ଦାଣ୍ଡ ଅବୋଲେ ଅଂଶ ହୁଅଇ ଯେ ପୂର୍ଣ୍ଣ ।
ପୂର୍ଣ୍ଣ ହେଲେ ସଂସାରରେ ହୋଇବ ଧାରଣ । ୬୦ ।

ମୂଳ ଯେ ଗୋପାଳ ତୁମ୍ଭ ଅଂଶ ସଙ୍ଗେ ମିଳି ।
ଖୋଳ ସଙ୍ଗେ ମିଶି ବଜାଇବ କରତାଳି ॥
ଖୋଳ କରତାଳ ଫଳେ ପାଅ ତୁମ୍ଭେ ପୂଜା ।
ତୁମ୍ଭଙ୍କୁ ପୂଜୁଥିବେ ଦିଗପାଳ ରାଜା ॥

ଫୁଲ ପାନ ଚନ୍ଦନ ଚମ୍ପକ ଭଲ ଥାନ ।
ଦ୍ରବ୍ୟଭୋଗ ଭୁଞ୍ଜିବ ହେ ତୁମ୍ଭେ ବାରଜଣ ॥
ଆମ୍ଭ ଅଂଶ ଭୃଗୁ ଅଂଶ ରାମ ଅଂଶ ମାନେ ।
ଧର୍ମ୍ମ ଅଂଶ ଯାଦବ ଅଂଶ ଆମ୍ଭ ତୁମ୍ଭେ ଜନେ ॥
କୃଷ୍ଣ ଅଂଶ ନାହାନ୍ତି ତ ବଇରାଗ ଜନେ ।
ଏଥୁଁ ପାଞ୍ଚ ଅଂଶ ଛନ୍ତି ଆମ୍ଭ ଅଂଶମାନେ । ୬୫ ।

କପଟ ଭିକ୍ଷାକୁ ସେ ଯେଣୁ କରିଥିବ ମନ ।
ମୂଢ଼ ଯେ ଗହଳ ଘରେ ବୁଲୁଥିବେ ପୁଣ ॥
ନେତ ଗୋପାଳର ଘରେ ବୁଲୁଥିବେ କାଠ ।
ବସ୍ତ୍ର ପଣେ ଯେକଣ ଆରମ୍ଭେ ବଡ ଜାଠ ॥
ଦମ୍ଭ ମୁରାଟରେ ସେହୁ ହକ୍କ ଲ ନୋହିବେ ।
ଭଜନ ବଜନ ଶାସ୍ତ୍ରମାନ ନ ଖୋଜିବେ ॥

ଯନ୍ତ୍ର ମନ୍ତ୍ର ତନ୍ତ୍ର ତ୍ରାସ୍ତ୍ରା କୋଟି ନ ସାଧିବେ ।
ଅବାଡ଼ ସମାଧି ଭେଦ ଯେଣୁ ସେ ତ୍ରାଡ଼ିବେ ॥
ଗୋ ବ୍ରହ୍ମହତ୍ୟା ଯେ ମାତୃହରଣ ବିଶୁଳି ।
ସୁରାପାନ ଜୀବହତ୍ୟା ବିଶ୍ୱାସ ମାତଲି । ୭୦ ।

ଏତେକର ପାପମୂଳେ ଅଠର ଯେ ପାପ ।
ଅଠର ମୂଳରେ ଅଷ୍ଟାଦଶ ଗୋଟି ଗୋପ୍ୟ ॥
ଅଷ୍ଟାଦଶ ଗୋଟିକ ଅଠର ବୀଜ ମନ୍ତ୍ର ।
ଜପ କଲେ ନାଶଇ ସକଳ ଦେହ ତନ୍ତ୍ର ॥

ଏ ପାପମାନଙ୍କୁ ଛେଦେ ଯେତୁ ମନ୍ତ୍ର ଜପି ।
ମନ୍ତ୍ରକୁ ବୁଝରେ ଯେବେ ଯେତୁ ପାରେ ସ୍ଥାପି ॥
ଷଡ଼କ୍ଷର ମନ୍ତ୍ରକୁ ହୃଦ—ସମାଧି ଯେ ଲଏ ।
ଏକାକ୍ଷର ମନ୍ତ୍ରକୁ ଯେ ଜ୍ୟୋତିରୂପ ଧ୍ୟାଏ ॥
ତାରକ ମନ୍ତ୍ରକୁ ଅର୍ଦ୍ଧମାତ୍ରା କରି ଧ୍ୟାନ ।
ଶ୍ୟାମ ପଞ୍ଚାକ୍ଷରକୁ ଓଁ କାର ଶିର ସ୍ଥାନ । ୭୫ ।

ହରେ ରାମ ମନ୍ତ୍ରକୁ ଓଁମଠି କର ଲକ୍ଷ୍ୟେ ।
ମନ୍ତ୍ର ମୂର୍ତ୍ତି ପଞ୍ଚ ଦେବ ସୁଜ୍ଞ ସାଧୁ ଧ୍ୟାଏ ॥
ଷଡକ୍ଷର ଏକାକ୍ଷର ତାରକ ମନ୍ତ୍ରର ।
ଶ୍ୟାମ ପଞ୍ଚାକ୍ଷର ହରେ ରାମ ମନ୍ତ୍ର ସାର ॥

ଏହୁ ପଞ୍ଚ ମନ୍ତ୍ର ପଞ୍ଚ ଯୁଗେ ଅଟେ ସାର ।
ଏହୁ ପଞ୍ଚ ମନ୍ତ୍ର ଧରି ଭବୁ ହେବୁ ପାର ॥
ମୋହ ନାମେ ଯଜ୍ଞକୁଣ୍ଡେ ପାପ କ୍ଷୟକର ।
ରହ୍ୱାସ ଗୋପାଳ ତୁମ୍ଭେ ବାର କାଢ ମୋର ॥
ନାମ ଧୂନି ଶବ୍ଦରେ ସର୍ବ ଦାନ ହର ।
ସୁବର୍ଣ୍ଣ ରଜତ ବସ୍ତ୍ର କହନ୍ତି ଅପାର । ୮୦ ।

ରହ୍ୱାନ୍ତ ମଣ୍ଡଳେ ଦେଲେ ପାପ ନ ଲାଗିବ ।
ପାପକୁ ବିନାଶି ତୁମ୍ଭେ ଭୋଗ କରୁଥିବ ॥

ପଞ୍ଚ ମୂର୍ତ୍ତି ପଞ୍ଚମନ୍ତ୍ର ପଞ୍ଚଶାଖା ଯୋଏ ।
ଜପିଲେଣ ପାପମାନ ହୋଇବ ଯେ କ୍ଷଏ ॥

ଏ ଭେଦ ନ ଜାଣି ବିପ୍ର ବନ୍ଦାପନା ଶୁଭେ ।
ବିରୋଧ ବିଟାଳମାନ ଖାଆନ୍ତି ଯେ ଲୋଭେ ॥
ତେବେ ହୁଏ ଯେ ବ୍ୟାଧି ପୀଡ଼ିତ ଶରୀର ।
କଦୁକୀ ହୋଇଣ ବିଡ଼ମ୍ବନା ସେତୁ ନର ॥
ରହ୍ୱାସ ଦାସ ହେ ଶୁଣ ମୁକୁନ୍ଦ ଅନନ୍ତ ।
ଅଚ୍ୟୁତ କହିଲେ ଗୁରୁଭକ୍ତିଗୀତା ତତ୍ତ୍ୱ ॥

ଦ୍ୱିତୀୟଖଣ୍ଡ ଯେ ପଞ୍ଚଦଶ ଗ୍ରନ୍ଥରେଣ ।
ଏହା ଯେ କହିବ ସଦଗୁରୁ ବୋଲି ଚିହ୍ନ ॥
ଏ ଭେଦ ନ ଜାଣି ଯେହୁ ଗୁରୁ ବୋଲାବନ୍ତି ।
ମୁଦ୍ରିତ କୁସୁମରେ କି ଭ୍ରମର ପଶିବ ॥ ୮୨ ॥

ଇତି ଶ୍ରୀ ଗୁରୁଭକ୍ତଗୀତାୟାଂ ଦ୍ୱିତୀୟଖଣ୍ଡେ ମନ୍ତ୍ରଭେଦ
କଥନେ ନାମ ପଞ୍ଚଦଶ ପଟଳ ।



## ଷୋଡ଼ଶ ପଟଳ

କରଯୋଡ଼ି ଜଣାବନ୍ତି ରାମଚନ୍ଦ୍ର ଦାସ ।
ଆମ୍ଭ ପୂର୍ବମାନଙ୍କର କହିଲ ତ ଅଂଶ ॥
ନାଦ ପୁତ୍ର ବାର ଜଣ ପ୍ରମାଣ ଭବିଷ୍ୟେ ।
ପ୍ରସନ୍ନେ କହିଲ ଗୁରେ ଆମ୍ଭଙ୍କୁ ହରଷେ ॥

ବିନ୍ଦୁ ପୁତ୍ର ପଞ୍ଚଜନ ହୋଇବ କେସନ ।
ମର୍ତ୍ତ୍ୟସ୍ଥଳେ କେଉଁ କେଉଁଠାରେ ହେବ ସ୍ଥାନ ।
ଶୁଣ ଆହେ ରାମଚନ୍ଦ୍ର ଅଚ୍ୟୁତ ବଚନ ।
ନେମ୍ବାଳ ଭୁବନେ ଚକ୍ରଡୋଳାର ଯେ ସ୍ଥାନ ॥
ଲବଣ ତଟରୁ ବେଢ଼ି ବରଗ୍ରାମ ନାମ ।
କାନ୍ୟେଶର ବନ ସେ ନେମ୍ବାଳ ଲଗି ବନ ॥ ୯ ॥

ସେ ବନକୁ ଆଶ୍ରେକର ରାମଚନ୍ଦ୍ର ଦାସ ।
ଦେହକୁ ରଖିବ ତହିଁ ଆମ୍ଭ ବଟ ପାଶ ॥
ପଦ୍ମବନ ନେମ୍ବାଳ ଅମ୍ଭର ସେହୁ ସ୍ଥାନ ।
ଭାରତ ସାର ଶ୍ରୀକୃଷ୍ଣ ସେ ସ୍ଥାନେ ଗମନ ॥
ସେ ଥାନେ ଶ୍ରୀକୃଷ୍ଣ ବସି ନୀଳାଚଳ ଗଲେ ।
ଅଠାଶି ଭୁବନେ ଯାଇ ଅନ୍ତର ହୋଇଲେ ॥

ଏଣୁ କରି ସେ ସ୍ଥାନରେ ଆମ୍ଭର ରହଣି ।
ରାମଚନ୍ଦ୍ର ହୃଦତ ଉତ୍ତର ଦଗେ ପୁଣି ॥
ଦକ୍ଷିଣ ଦଗରେ ବୃଦ୍ଧ ଗଙ୍ଗାନଦୀ ସ୍ଥାନ ।
ଖଣ୍ଡ ବସେ ପିଡାଇ ପୁର ସେହୁ ଗ୍ରାମ ପୁଣ ॥ ୧୦ ॥

ଅଚ୍ୟୁତର ସୁତ ବେବ ବ୍ରଜ ଗଦାଧର ।
ବାଳ ଯେ ମୁକୁନ୍ଦ ହେବ ଗନ୍ଧର୍ବ ରାମର ॥

କଚ୍ଛ ଦନର ଅନ୍ତରେ ଗୋଲକୁଣ୍ଡା ହେବ ।
ବ-ଅକ୍ଷରେ ନାମ ହେବ ଗୋଲକୁଣ୍ଡା ସ୍ଥାବ ॥
ଭ୍ରଥବୀର·ରହିବ ଖଦିର ବନ ସେହି ।
ଅପୋଢ଼ା ପୃଥିବୀ ତହିଁ ଗୁପତେ ଅଛଇ ॥
ପୂର୍ବଭାଗେ ଚନ୍ଦ୍ରଭାଗା ଅଦକ ଦଗରେ ।
ସଙ୍ଗରସ ବୋଲି ଗ୍ରାମ ପୁଷ୍କରଣୀ ତୀରେ ।
ସେ ପୋଖରୀ ପୂର୍ବଭାଗେ ଅଛି ଏକ ତୀର୍ଥ ।
ସେ ତୀର୍ଥେ ପଶିଲେ ପାପୀମାନେ ଯେ କୃତାର୍ଥ ॥ ୬୯ ॥

ଲୋକନାଥ ଆଗ୍ରେ କର ନନ୍ଦନ ଯେ ବନ ।
ବନ୍ଦଦାସ ସେ ସ୍ଥାନରେ ସମାଧି ଯେ ଘେନ ॥
ପଶ୍ଚିମ ଦଗରେ ନଇରୁତ କଣ କହୁ ।
ଲୁଣଭଦ୍ରା ନଦୀ ତୀର୍ଥେ ପୁଣ୍ୟ ଅଟେ ସେହୁ ॥
ଯାଇଲେ କଶେଷ ଧରେ ଠକ୍କ ଦାସ ରହି ।
ଏକାମ୍ର ସନ୍ନିଧରେ ସେ ସ୍ଥାନ ଯେ ଅଟଇ ॥
ସେ ସ୍ଥାନେ ବନ୍ଦୁସାଗର ତୀର୍ଥରାଜ ସେହି ।
ତାହାଙ୍କ ଦର୍ଶନେ ସର୍ବ ପୁଣ୍ୟମାନ ପାଇ ॥
ବିଷ୍ଣୁଦାସ ବନଖଣ୍ଡି ରହିବ ଯେ ପୁଣ ।
ହେମ ବନ ଆଗ୍ନେ କର ୀନପୁରେ ସ୍ଥାନ ॥ ୭୦ ॥

ମନ୍ଦାନଦୀ ଉତ୍ତରେଣ ଜଗମ ଲୁକନ ।
ଶମ୍ଭୁ ଆଗ୍ରେ କଶଣ ସେ ଦେବୀ ଜଗବାଣ ॥
ଏହୁ ପଞ୍ଚଶାଖା ମୋର ଅଟେ ନଜ ଅଂଶ ।
ତାରେବ ଗୋପାଳକୁଳ ଓଡ଼ଶ ଯେ ଦେଶ ॥
ଭ୍ରଥ ଦାସ କରଯୋଡ଼ି ପଚ୍ଛୁରୁଛି ମୂର୍ଦ୍ଧି ।
କେଉଁ ଅଂଶେ କେତେ ଦାସ କଳପିଡ଼ା ହୋଇ ॥

ସମଅଂଶେ ତାଙ୍କୁ ଦାସ ବୃଥା ଯେ ସାରସ ।
ମିଛରେ ତ କଳପିଡ଼ା ଲଗିବ ତା ଅଂଶ ॥

ଭୃଗୁ ଅଂଶେ ଅନନ୍ତ ସେ ପୁରୁଷୋତ୍ତମ ।
ଭଗତ ଅଂଶରେ ଦ୍ୱି ଅକ୍ଷରେ କଳିତମ ॥ ୨୯ ॥

ଧର୍ମ୍ମ ଅଂଶେ ସୂର୍ଯ୍ୟଅଂଶେ ଜବୀଜ ଅଟଇ ।
କଳିତ ପ ସେଠାବରୁ ଘୋଟିବ ସେ ମନ୍ତ୍ର ॥
ବଳଅଂଶେ ଭଗବାନ ପବନ ବକ୍ଷଭେ ।
ଦ୍ୱିଅକ୍ଷରେ ତାପ ଲଗିବ ସେଠାରେ ତ ଭଲେ ॥
ଆହେ ନାନ୍ତି ଜନମାନେ ମୁକୁନ୍ଦ ଅନନ୍ତ ।
ଅଚ୍ୟୁତର ବୀର୍ଯ୍ୟେ ଭୁଜ ଗଦାଧର ଜାତ ॥
ବାଲ ସେ ମୁକୁନ୍ଦ ଗନ୍ଧର୍ବର ପୁତ୍ର ଜାତ ।
କିଛୁ କିଛୁ ସୁଖ ଥିବ ସଂସାର ସଙ୍ଗତ ॥
ରାମଚନ୍ଦ୍ର ବୋଲି ପୁତ୍ରେ ହୋଇବାକ ଜାତ ।
କଳିତାପ ସେଠାବରୁ ହୋଇବ ବହୁତ ॥ ୩୦ ॥

ଭୃଗୁ ଅପୁତ୍ର ନପୁତ୍ରରେ ବଢ଼ିବ ଶୋକାଏ ।
ଅନ୍ନ ନ ମିଳିବାରେ ସେ ଭକ୍ଷଣ କାଏ ॥
ବଇଷ୍ଣବ କ୍ଷେତ୍ରଭ୍ରଷ୍ଟ ରାଜକର୍ମ କଣ ।
ପାଦରେ ନ ଗମିବେ ସେ ଗୁରଙ୍କ ଆଦେଶ ॥

ପାଦାନ୍ତ ଚଉକି ଚଢ଼ି କୁକୁର ମାଙ୍କଡ଼ ।
ଦାସୀ ପଣବାସ୍ତି ପୋଷି ହେବେ ନାରଙ୍କର ॥
ବଚନନିନ୍ଦୁକ ଧର୍ମ୍ମ ନ ରହିବ ଅଂଶେ ।
ପେଟର କାମନ୍ତେ ସେ ବୁଲିବେ ଦେଶେ ଦେଶେ ॥
ଦେଶକେ ପୁତ୍ର ଗୋଟିଏ ନ ରହିବେ ପୁଣ ।
କମଳ ଛପୁଲୁଥିବ ଅମ୍ଭର ଅଂଶେଣ । ୩୧ ।

ଶୂଦ୍ର ଦାସ ପରାଏଣ ସଂସାରେ ରହିବେ ।
ଅନ୍ନ ବସ୍ତ୍ର ବିହୁନେ ସେ ଛଟପଟ ହେବେ ॥
ପଞ୍ଚ ଅଂଶ ଅମ୍ଭ ଅଂଶ ବାର ଅଂଶ ମାନ ।
ଭକ୍ତରେ ନବଭକ୍ତମ ଘୋଟିବ ବନ୍ଧନ ॥

ସାଇରେ ସାଇରେ ଗୋଳ କରିବେ ସଂସାରେ ।
ଗୁରୁଶିଷ୍ୟ ଭିନ୍ନାଭିନ୍ନ କରିବେ ଅନ୍ତରେ ॥
ଆଗରେଣ ଗୁରୁ ଦେଖି କରିବେଟି ମାନ୍ୟ ।
ପଛରେ ବୋଲିବେ ଗୁରୁ ବଡ଼ କୁଟଜନ ॥
କାଳୁଡ଼ିର ପ୍ରାୟେ ଗୁରୁ ଶିଷ୍ୟ ହୋଇଥିବେ ।
ବଚନ ଅନ୍ଧତେ ଗୁରୁ ପଥ ବୁଡ଼ାଇବେ । ୪୦ ।
କରପଝ ଯୋଡ଼ି କହେ ଅନନ୍ତ ମୁକୁନ୍ଦ ।
ମୁକୁନ୍ଦ ପାଷଣ୍ଡ ଜୀବ ଏଥୁ ବଡ଼ ଦ୍ୱନ୍ଦ ॥
ଶୁଣ ହେ ବିଶ୍ୱାସ ନାଥ ମୁକୁନ୍ଦ ଅନନ୍ତ ।
ଏକ ପୁଣ୍ୟ ଯୋଗୁଁ ଯିବ ବହୁପୁଣ୍ୟ ଜାତ ॥
କଳିର ନବଢ଼ ଘୋର କୃଷ୍ଣରସ ଜାତ ।
ପାପଗ୍ରହ ଘୋଟିବ ଯେ କଳି ହେବ ହତ ॥
ଗୁରୁଘରେ ପାପ ହେଲେ ସଡ଼ମ୍ବନ ହେବ ।
କଳିର ଅନ୍ଧାର ସର୍ବ ଘରେପ୍ରକାଶିବ ॥
ରାଜେନ୍ଦ୍ର ଯୋଗେନ୍ଦ୍ର ଘରେ ପ୍ରଣ୍ଡି ଯେବେ ଥାଇ ।
ମହାଘୋର ପାପମାନ ଧ୍ୱଂସକରି ଯାଇ । ୪୫ ।
ରାଜେନ୍ଦ୍ର ଯୋଗେନ୍ଦ୍ର ଘରେ ନ ରହିବ ସତ ।
ଏଣୁକରି କଳିଯୁଗ ହୋଇବଟି ହତ ॥
ରାଜାମାନେ ଛଣ୍ଡି ନେବେ ପରଜାର ଧନ ।
ଗୁରୁମାନେ ଶିଷ୍ୟଠାରେ ଲୋଭେ ଦେବେ ମନ ॥
ମନ୍ତ୍ର ଯନ୍ତ୍ର ପଢ଼ିଶିଲେ କରିବେ ଯେ ହିଂସା ।
ପେଟର କାମନ୍ତ୍ରେ ବୁଲି ଦେଶେ ଦେଶେ ଆଶା ॥
ରାଜାମାନେ ସତ୍ୟଭାଷାମାନ ନ କହିବେ ।
ପଞ୍ଚା ଦେଇ ପରଜାଙ୍କୁ ଦୁଇଗୁଣ ନେବେ ॥
ମଦିର ପାନ କରିବେ ବ୍ରାହ୍ମଣ କ୍ଷତ୍ରିୟ ।
ଦେବୀ ପୂଜା ବୋଲିଣ ସେ ମିଳିବେ ଶୂଦ୍ରୟ । ୫୦ ।

୫୦—୨=ଭକ୍ଷିବେ ଅମିଷ—ଗ ।

ଝାଇରେ ଝାଇରେ ଗୋଳ କରିବେ ସଂସାରେ ।
ଗୁରୁଶିଷ୍ୟ ଭିନ୍ନାଭିନ୍ନ କରିବେ ଅନ୍ତରେ ॥
ଆଗରେଣ ଗୁରୁ ଦେଖି କରିବେଟି ମାନ୍ୟ ।
ପଛରେ ବୋଲିବେ ଗୁରୁ ବଡ଼ କୁଟଜନ ॥
କାକୁଡ଼ିର ପ୍ରାୟେ ଗୁରୁ ଶିଷ୍ୟ ହୋଇଥିବେ ।
ବଚନ ଅନ୍ଧକେ ଗୁରୁ ପଥ ବୁଡ଼ାଇବେ । ୪୦ ।
କରପଦ୍ମ ଯୋଡ଼ି କହେ ଅନନ୍ତ ମୁକୁନ୍ଦ ।
ମୁକୁନ୍ଦ ପାଷଣ୍ଡ ଜୀବ ଏଣୁ ବଡ଼ ଦ୍ୱନ୍ଦ ॥
ଶୁଣ ହେ ବିଶ୍ୱାସ ନାଥ ମୁକୁନ୍ଦ ଅନନ୍ତ ।
ଏକ ପୁତ୍ର ଯୋଗୁଁ ପିତ ବନ୍ଧୁପୁତ୍ର ଜାତ ॥
କଳିର ଉଦ୍ଭବ ଘୋର କୃଷ୍ଣରସ ଜାତ ।
ପାପଗ୍ରହ ଘୋଟିବ ଯେ କଳି ହେବ ହତ ॥
ଗୁରୁଙ୍କରେ ପାପ ହେଲେ ଜଡ଼ମୂଳ ହେବ ।
କଳିର ଅଙ୍ଗାର ସର୍ବ ଘରେପ୍ରକାଶିବ ॥
ରାଜେନ୍ଦ୍ର ଯୋଗେନ୍ଦ୍ର ଘରେ ସ୍ତ୍ରୀ ଯେବେ ଥାଇ ।
ମହାଘୋର ପାପମାନ ଧ୍ୱଂସକରି ଯାଇ । ୪୫ ।
ରାଜେନ୍ଦ୍ର ଯୋଗେନ୍ଦ୍ର ଘରେ ନ ରହିବ ସତ ।
ଏଣୁକରି କଳିଯୁଗ ହୋଇବଟି ହତ ॥
ରାଜାମାନେ ଛଡ଼ି ନେବେ ପରଜାର ଧନ ।
ଗୁରୁମାନେ ଶିଷ୍ୟଠାରେ ଲୋଭେ ଦେବେ ମନ ॥
ମନ୍ତ୍ର ଯନ୍ତ୍ର ପଚ୍ଚରିଲେ କରିବେ ଯେ ହିଂସା ।
ପେଟର ନିମନ୍ତେ ବୁଲି ଦେଶେ ଦେଶେ ଆଶା ॥
ରାଜାମାନେ ସତ୍ୟାସତ୍ୟମାନ ନ କହିବେ ।
ପଞ୍ଚା ଦେଇ ପରଜାଙ୍କୁ ଦୁଇଗୁଣ ନେବେ ॥
ମଦିରା ପାନ କରିବେ ବ୍ରାହ୍ମଣ କ୍ଷତ୍ରିୟ ।
ଦେବୀ ପୂଜା ବୋଲିଣ ସେ ମିଳିବେ ଶୁଦ୍ରସ୍ତ୍ରୀ । ୫୦ ।

୫୦—୨=ଭକ୍ଷିବେ ଅମିଷ୍ଟ—ଗ ।

ଏଣୁକରି ଘରେ ଘରେ କଳି ପାପ ହେବ ।
ବ୍ରାହ୍ମଣ ମଦ୍ୟପାନେ ସର୍ବ ତତ୍ତ୍ୱ ଯିବ ॥
ଇନ୍ଦ୍ର ନ ପାଳିବ ସେ ଯେ ବେଳକାଳ ଜାଣି ।
ପୃଥ୍ୱୀରେ ଦନକୁ ଦନ ମନ୍ୱନ୍ତର ଟାଣି ॥
ଓଡ଼ିଶା ତେଲଙ୍ଗ ଦଲ୍ଲୀ ମରହଟ୍ଟା ଦେଶ ।
ଠାବେ ଠାବେ ହଣା ଯୁଦ୍ଧ ହୋଇବ ବଶେଷ ॥
ଏ ଦେଶର ଲୋକ ଯାଇଁ ସେ ଦେଶେ ପଶିବେ ।
ପେଟର ବହ୍ନନେ ସର୍ବେ ଛଟପଟ ହେବେ ॥
ହୋଇବ ଅନାଥ ଯନ୍ତୁଁ ସକଳ ଆବର୍ତ୍ତ ।
କଲଙ୍କୀ ପ୍ରବେଶ ହେବେ ଓଡ଼ିଶା ଦେଶେ ତ । ୬୯ ।
ତେବେ ବା ସଂସାରେ ସୁଖ ହୋଇବାକ ପୁଣ ।
ବିପ୍ର ଧରିଇବ ଛନ୍ଦ ଯେଉଁଦିନେ ଜାଣ ॥
ତେତେଦିନ ଯାଏ ପ୍ରାଣୀ ଦୁଃଖରେ ପଡ଼ିବେ ।
ତପତ ଜଳରେ ମୀନ ପ୍ରାୟେକ ବର୍ତ୍ତିବେ ॥
କଳିଯୁଗ ଚରିତ ଏ ମନ୍ଦକର୍ମ ଯେତେ ।
ମନ୍ଦକର୍ମ କଲା ଲୋକ ଭଲ ଏ ଜଗତେ ॥
କିନ୍ତୁ ଦିନ ଭଲ ହେବ ପୁଣ୍ୟ ନାଶ ଯିବ ।
କଳିଯୁଗ ମାୟା ସେ ଯେ ଜାଣି ନ ପାରିବ ॥
ଧନପଣ ଜନ ହେବେ କଳିଯୁଗେ ମନ୍ଦ ।
କିଛିଦିନେ ସେଥୁ ପୁଣ ପଡ଼ିବେ ଯେ ଦ୍ୱନ୍ଦ୍ୱ ॥ ୭୦ ॥
ପ୍ରାଣୀମାନେ କହୁଥିବେ ମନ୍ଦ କଥାମାନ ।
ସଂସାରରେ ଉତ୍ତମ ହେଇବେ ସେହୁ ଜନ ॥
କଳିଛନ୍ଦ ବିଡ଼ମ୍ବଣ ନ ଜାଣି ଦମ୍ଭିତ ।
ସମସ୍ତଙ୍କୁ ବିଡ଼ମ୍ବଣ ସକଳ ହେବ ତ ॥

---

୬୧—୨ = ଧର୍ମ ନାଶ ହେବ—ଗ ।
୭୧—ପ୍ରାଣୀମାନେ କହୁଥିବେ ମନ୍ଦ କଳ ଜଣ ।
ସଂସାରରେ ଉତ୍ତମ ହୋଇଲ ଏହୁ ପୁଣ—କ

ସମୁଦ୍ର ଲହରୀ ପ୍ରାଏ କଳୁଦନ ଶୋଷ ।
କେଣେ ନାଶ ଯିବ ସେ ତ ନ ରହିବ ପ୍ରସ ॥
ସତୀ ସତ ସଂସାରରେ ଶୀର୍ଣ୍ଣ କ୍ଷୀଣ ଥିବେ ।
ବଦ୍ଧାନ ହୋଇବେ ସେହୁ ମର୍ତ୍ତ୍ୟ କଳିଯୁଗେ ॥
ଖଟୁଆ ମିଛୁଆ ଆପୁଁଧୂଆଁ ଯେ ପାହସୀ ।
ପରସ୍ତ୍ରୀ ହରଣ ଯେ ଦଣ୍ଡାଭଙ୍ଗା ବୃଷୀ ॥
ଅଗାଢ଼ ଅଟନ୍ତି ଏହୁ କଳିର ଅସୁର ।
ମର୍ତ୍ତ୍ୟ କଳିଯୁଗେ ଏହୁ ନ ଥିବେ ସଂସାର ॥
ସତ ଯତ ପ୍ରାଣୀମାନେ କଳିରେ ବନ୍ଧନ ।
ଅଚ୍ୟୁତ ବଚନ ଏହୁ ହେତୁ ମନେ ଘେନ ॥
ଏଣୁ ଗୁରୁଭକ୍ତ ଗୀତା ଅଟଇ ଗୁପତ ।
ନ ମାନିବେ ପ୍ରାଣୀମାନେ କରିବେ ହାସ୍ୟତ ॥
ଅସତ୍ୟ ଜନ ବଢ଼ିବେ ସଂସାରେ ବହୁତ ।
ଏକ ଏକ ଥିବେ ପୁଣ ନର ଯତ ସତ ॥
ଏହୁ ଗୁରୁଭକ୍ତ ଗୀତା ଦ୍ୱିତୀୟ ଖଣ୍ଡରେ ।
ଅଂଶସ୍ଥାନ କଳିଯୁଗ କହିଲୁ ତୁମ୍ଭରେ ॥

ଇତି ଶ୍ରୀ ଗୁରୁଭକ୍ତଗୀତାୟାଂ ଦ୍ୱିତୀୟଖଣ୍ଡେ ଗୁରୁଶିଷ୍ୟ ବୋଧନେ ନାମ ଷଷ୍ଠଦଶ ପଟଳ ।

—o—

# ସପ୍ତଦଶ ପଟଳ

ହର୍‌ଆନ ! ପବନ ଯେ ଆନନ୍ଦ ଗୋବିନ୍ଦ ତ ।
ପମ୍ବରୁଙ୍କୁ ଗୁରୁଦେବ ରହିଲ ଧୋକେ ତ ॥
ରାମଦାସ ବାରଜଣ କହିଲେ ତ ଅଂଶ ।
ପଞ୍ଚଶାଖା ମିଳଣ ଯେତେକ ଅଂଶାଅଂଶ ॥
ସପତ ଶାଖାରେ ପୁଣ କହଇ ଗୁରୁ ତ ।
କେମନ୍ତ ହୋଇଣ ସେ ଯେ ସଂସାରେ ଉଦ୍ଧତ ॥
କୁମ୍ଭାର ରାମ ଦାସର ଅଂଶ ତ ନୋହିବ ।
କମାର ରାମର ଅଂଶେ ଜନ୍ତରେ ମଜ୍ଜିବ ॥ ●
ନନ୍ଦ ଯେ କମାର ନାରଣର ହେବ ଅଂଶ ।
କଥ ଯେ ଅକ୍ଷରେ ଛାପ ଲାଗିବ ବିଶେଷ ॥ ୯ ॥

ସାଇବସ୍ତି ବଷେ ନର କୁଣ୍ଡ ବଳଦାରେ ।
ଦେବାନନ୍ଦାଗାରେ ମୃତ୍ୟୁ ହେବ ସେ ସ୍ଥାନରେ ॥
ଦକ୍ଷିଣ ଚନ୍ଦ ଯେ ବଇତରଣୀର ବଷେ ।
ରହିଣ ସମାଧି ସ୍ଥାନ ବାସୁଦ୍ୟର ଦେଶେ ॥
ଦକ୍ଷିଣ ଅଂଶର ପ ଅକ୍ଷରେ ପୂର୍ବ ଜାତ ।
ପରମାନନ୍ଦ ଠାବରୁ କଳରେ ଆଗତ ॥
ନିରଞ୍ଜନ ପୁଣ ସେହୁ ଗ୍ରାମରେ ରହଣି ।
ମଧୁଠାରୁ ଅଂଶ ପୁଣି ଗୁପତଟି ଜାଣି ॥
ନନ୍ଦ କନ୍ଦ ଜୀର ଯେ ଦକ୍ଷିଣ ଚନ୍ଦତଣେ ।
କମାର କୁମ୍ଭାର ମିଳି ଏତୁ ସପ୍ତ ପୂର୍ଣ୍ଣ । ୧୦ ।

ରସିବ ଯେ ବାର ପରେ ବାରଟିଆ ପାର ।
ସ୍ୱଉସ୍ତ୍ର ଯୋଗାରୂଢ଼ ପଞ୍ଚସଖାଙ୍କର ॥

ଏଣୁ କରି ଅଚ୍ୟୁତରେ ଷୋଳସହସ୍ର ଶାଖା ।
ଯୁଗେ ଯୁଗେ ଅବତାର ଉଚ୍ଚତରେ ଲେଖା ॥
ଷୋଳସହସ୍ରେ ସାର ବାରଟିଆ ରାମଦାସ ।
ବାର ଦାସେ ସାର ସପ୍ତଶାଖା ଅଟେ ଅଂଶ ॥
ସପ୍ତଶାଖା ବଂଶ ସାର ପଞ୍ଚଶାଖା ପୁଣ ।
ପଞ୍ଚଶାଖା ସାର ପୁଣ ଅଚ୍ୟୁତରେ ଗଣ ॥
ସୁଦାମା ଗୋପାଳ ନାମ ଦ୍ୱାପରେ ଯେ ହୋଇ ।
ତ୍ରେତୟା ଯୁଗରେ ନାମ ନଳ ମୁଁ ବୋଲାଇ । ୧୫ ।
ସତ୍ୟ ଯୁଗେ ନାମ ମୋର ହୋଇଛି କୃପାଜଳ ।
ଅନନ୍ତ ଯୁଗରେ ଶୁଭନନ୍ଦ ଯେ ଗୋପାଳ ॥
ଯୁଗେ ଯୁଗେ ଜାତ ଆମ୍ଭ ସଙ୍ଗେ ବାରଦାସ ।
ରାହାସ ଲୀଳାରେ ଆମ୍ଭେ ହେଉଁ ପରବେଶ ॥
ଅନନ୍ତ ଯୁଗରେ ରାମ ସଙ୍ଗେ ତଳି ବାଇ ।
ରାମତାଳରେଣଟି ଅନନ୍ତ ଯୁଗ ବାନ୍ଧ ॥
ସତ୍ୟଯୁଗେ ଋଷି ମେଳେ ନାମ କୀର୍ତ୍ତନ ।
ନୈମିଷାରଣ୍ୟରେ ସେ ଯେ ରୂପରେ ରହଣ ॥
ତ୍ରେତୟା ଯୁଗରେ ରାମ ସଙ୍ଗେ ତାଣ୍ଡବରେ ।
ନୃତ୍ୟ ଗୀତ କରୁ ହନୁ ନଳ ନୀଳ ମେଳେ । ୨୦ ।
ଦ୍ୱାପର ଯୁଗରେ ତୁମ୍ଭେ ଅଷ୍ଟାଦଶ ମେଳେ ।
ରାହାସ ଲୀଳାରେ ଥିଲ ତୁମ୍ଭେ କୁତୂହଳେ ॥
କଳିଯୁଗେ ଶ୍ରୀକୃଷ୍ଣ ଚୈତନ୍ୟ ରୂପେ ଜାଣ ।
ପ୍ରତ୍ୟକ୍ଷେ ଦର୍ଶନ କଲ ଚର୍ମର ନୟନ ॥
ସେ ତୁମ୍ଭଙ୍କୁ ଦେଲେ ଖୋଳ କରତାଳ ଯେଣୁ ।
ଓଡ଼ିଶାରେ ରାହାସ ରଖିଲ ତୁମ୍ଭେ ତେଣୁ ॥
ପ୍ରତାପର ଆଗ୍ରେ ଗଲେ ପିତାଙ୍କର ବଳେ ।
ରାହାସ ରଖିଲୁ ଆମ୍ଭେ ଓଡ଼ିଶା ଦେଶରେ ॥

ରାମଚନ୍ଦ୍ର ବୋଲେ ପୃଥ୍ୱୀ ହୋଇଲ କଳଣ ।
ରହ୍ୱାସ ରଖିଲ ତୁମ୍ଭେ ସାରଦା ଭୁବନ । ୨୫ ।

ଏଣୁକରି ସରସ୍ୱତୀ ତୁମ୍ଭଙ୍କୁ କରୁଣା ।
ଗୀତ ନୃତ୍ୟ ତୁମ୍ଭଙ୍କୁ ଯେ ଦର୍ଶିଲ ବାଜଣା ॥
ସକଳ ମନ୍ତ୍ରର ଗୁରୁ ସାରଦା ଅଟନ୍ତି ।
ତାହାଙ୍କର ପ୍ରସନ୍ନେ ତୁମ୍ଭଙ୍କୁ ନାହିଁ ଭ୍ରାନ୍ତି ॥

ଏଣୁକରି ଦେଶ ଗ୍ରାମ ସମସ୍ତ ତୁମ୍ଭର ।
ସର୍ବଜନ ପୂଜୁଥିବେ ତୁମ୍ଭ ଅଂଶ ନର ॥
ନୂଆ ହାଣ୍ଡି ନୂଆ ଅନ୍ନ ତୁମ୍ଭେ ତ ପାଇଲ ।
ମାଛ ନାସ୍ତି ମାଂସ ନାସ୍ତି ଧର୍ମକୁ ଭଜିଲ ॥
ଅଶୁଚଘରେ ଭୋଜନ ତୈଳ ଢଶୋଧନ । •
ଶୁଦ୍ଧ ଶ୍ରାଦ୍ଧ ବିଟାଳ ତୁମ୍ଭର ନାହିଁ ଧନ । ୩୦ ।

ଏତେ ସ୍ଥାନେ ହସ୍ତେ ରାନ୍ଧ କଲ କୃଷ୍ଣ ଭୋଗ ।
ଶେ ପାଳ ଗଉଡ଼ ସିନା ଅଟ ମାୟା ଅଙ୍ଗ ॥
ଏଣୁକରି ଗୋପକୁଳେ ତୁମ୍ଭେ ସାର ହୁଅ ।
ଖୋଳ କରତାଳ ଟୁଳ ଧର ତୁମ୍ଭ ଦେହ ॥
ଶୁଣ ହେ ମୁକୁନ୍ଦ ଦାସ ଅନନ୍ତ ଯେ ଦୁଇ ।
କଳିଯୁଗେ ଥୋକେ ଅଂଶ ଧରିବେ ବଢ଼ାଇ ॥
ମତାମତ ଦେଖ ଦେଖି ହୋଇଣ ମାଢବେ ।
ଖୋଳ କରତାଳ ବନ୍ଧ ଅଭୟ ଭିକ୍ଷିବେ ॥
ଅବାର୍ଯ୍ୟ ଅବଂଶ ଲୋକେ ଶିଖିବେ ଯତନ ।
ଅନ୍ୟାଦ୍ୟମାନ କରିବେ ବନ୍ଧ ବସ୍ତ୍ର ଚିହ୍ନ । ୩୫ ।

ଚକ୍ର ଅଟେ କରତାଳ ଶଙ୍ଖ ଖୋଳ ଅଂଶ ।
ଗଦା ଅଟେ ମୁରଲୀ ଯେ ପଦ୍ମ ଯେ ତରାପ ॥
ଏ ଚତୁର୍ଥ ମୂଧ ବନ୍ଧୁ ମାଛ ମାଂସ ଖାଇ ।
ଆଫୁ ଗଞ୍ଜା ଧୂଆଁ ପାନ ପରଦାସ ହୋଇ ।

ଏଥି ପ୍ରବେଶ ହୋଇଣ ଗ୍ରହାସେ ମିଶଇ ।
ଅଁଳପ ଆୟୁଷେ ମୃତ୍ୟୁ ଦାଣ୍ଡେ ଘୋଟଇ ॥
ଖୋଡ଼ ରୋଗ ବଣନାଶ ପ୍ରାପତ ଅଙ୍ଗରେ ।
ବନ୍ଧ୍ୟାର ଅମୃଧ ବନ୍ଧ ଅନାଦ୍ଧ ଯେ କରେ ॥
ନିର୍ମ୍ମଳ ଭଜନ କଲ ନିର୍ମ୍ମଳ ଭୋଜନ ।
ନିର୍ମଳ ଚରିତ୍ରେ ଧଇଲ ତୁମ୍ଭେ ବାରଜଣ । ୪୦ ।

ଦେଶ ଘୋର ସଂସାରରେ ନୋହିଲ ସଙ୍ଗତ ।
ଉଦାସୀର ସ୍ତ୍ର ସ୍ତ୍ର ତୁମ୍ଭେ ହେଲ ବାର ଚଉ ॥
ଅଚ୍ୟୁତ ପଥରେ ବାର ଦାସ ଯେଉଁ ଜନ ।
ପରମ ଗୁରୁ ସେବିଲେ ଦ୍ୱାପରେ ଗୋପ୍ୟାନ ॥
ସତ୍ୟ ଗୁପ୍ତ ଏହି ଗୁପ୍ତ ଗୋପ୍ୟାନ କରିବ ।
ଉକଟ କଲେଣ ତାର ବଂଶ ନାଶ ଯିବ ॥
ଖଚୁଆ ମିଛୁଆ ଆଗେ ନ କହିବ ଏହା ।
ରାମଚନ୍ଦ୍ର କହୁଛନ୍ତି ମୁକୁନ୍ଦଙ୍କୁ ଯାହା ॥
ପ୍ରାଣକଷ୍ଟ ଭଂତୁକଷ୍ଟ ମନକଷ୍ଟ ଧନ ।
ଆପକଷ୍ଟ ଗୃହକଷ୍ଟ ବନ୍ଧୁ ହୋଇବେ ହାନ । ୪୫ ।

ଗୁପତୁଁ ଗୁପତ ଏହା ନ କହିବ କାହିଁ ।
ଅଚ୍ୟୁତ ବଚନ ଯେହ୍ନ ପ୍ରତିପାଳି ଥାଇ ॥
ଜନ୍ମେ ଜନ୍ମେ ମୁହିଁ ପୁଣ ଭୃତ୍ୟପଣେ ଥିଲି ।
ପୂର୍ବଜନ୍ମେ ଗୋପାଳ କୁଳରେ ଜନମିଲି ॥
ଲୀଳାକୁ ଲୀଳା ଯେ କରି ତ୍ରିଲୋଚନେ ଜାତ ।
କେଶବ ନାମ ବହିବ ବରଜା ଦେଶେ ତ ॥

ମୋହର ଅଂଶରୁ ଅଂଶ ଅକ୍ଷରୁ ଜାତ ।
ନାମ ନାହିଁ ଅନାମରେ ନାମ ମୋ ଅଚ୍ୟୁତ ॥
ମୋହ ଅଂଶମାନେ ସବୁ ଗୋଳକରେ ପାଡ଼ିବେ ।
ଗୋଲକୁଣ୍ଡା ଗ୍ରାମରେ ସେ କଳିଦିନ ଥିବେ । ୫୦ ।

ସାଧୁଙ୍କ ବଚନ ଯେବେ ଅପ୍ରମାଣ ହୋଇ ।
ପର୍ବତ ଶିଖରେ ପୁଣ ଫୁଟିବଟି କଇଁ ॥
ଏଣୁକରି ଏହୁ ଗ୍ରନ୍ଥ ଗୋପ୍ୟରେ ରଖିଲେ ।
ଏ ଗ୍ରନ୍ଥ ଶୁଣି ନ ପାରୁ ପେଃରେ ମଲ୍କିଲେ ॥
ଏ ଗ୍ରନ୍ଥକୁ ଅତଗୂଢ଼େ ଗୋପ୍ୟରେ ରଖିବ ।
ଏକାକ୍ଷର ଅଣାକ୍ଷର ଯେତୁ ଜାଣିଥିବ ॥
ଏକ ଦୁଇ ତିନ ପାଞ୍ଚ ସ୍ତନ୍ଥ ଶୁଣି ମୁହିଁ ।
ଗୁଆ ଘୃତ ଧୂପ ଦୂବ ନଇବେଦ୍ୟ ଦେଇ ॥
ଯାହାକୁ ଆଜ୍ଞା ହୋଇବ ଏ ଗ୍ରନ୍ଥ ସେ ଶୁଣେ ।
ଅଚ୍ୟୁତ ବଚନ ସେତୁ ସତ୍ୟ ସତ୍ୟ ଜାଣେ । ୬୬ ।
ଗୁରୁଭକ୍ତ ଗୀତା ଏହୁ ଦ୍ୱିତୀୟ ଖଣ୍ଡେଣ ।
କହୁଲ ବଂଶାନୁକଥା କର୍ଣ୍ଣ ଦେଇ ଶୁଣ । ୬୭ ।

ଇତି ଶ୍ରୀ ଗୁରୁଭକ୍ତଗୀତାୟାଂ ଦ୍ୱିତୀୟଖଣ୍ଡେ ଗୁରୁଶିଷ୍ୟବୋଧନେ
ଯୁଗବଂଶାନୁଚରିତ-ଲୀଳା-ବର୍ଣ୍ଣନେ ନାମ ସପ୍ତଦଶ ପଟଳ ।

---

# ଅଷ୍ଟାଦଶ ପଟଳ

ଶୁଣ ହେ ମୁକୁନ୍ଦ ଦାସ ଅନନ୍ତ ସେ ଦୁଇ ।
ପବନ ଯାଦବ ବେନି ଅଭିନ୍ନ ତ ନୋହି ॥
ଉତ୍‌ଥାନ ପତନ ତୁମ୍ଭେ ଏକପ୍ରାଣ ବୋଲି ।
ବାଳକ ଗୋବିନ୍ଦ ଦୁହେଁ ତୁମ୍ଭେ ଥାଅ ମିଳି ॥
ବସ୍ତ୍ର ଯେ ମଥୁର ତୁମ୍ଭେ ନିରନ୍ତରେ ସାଥ ।
ବାଳକ ଯେ ବୃନ୍ଦାବନ ଅନ୍ତର ନୁହିଁ ତ ॥

ମଧୁ ଯେ ଆନନ୍ଦ ଦୁହେଁ ଏକଇ ଜୀବନ ।
ଏହି ବାରଜଣ ଯେନ ଅଚ୍ୟୁତ ବଚନ ॥
ଯେତେ ଗ୍ରନ୍ଥ କହିବ ନିତେତେକ ଶୁଣାଇବ ।
ଅଧିକ କହି ଶୁଣିଲେ ଉତ୍ତମ ନୋହିବ ॥
ନଡି ଯେ କଦଳୀ ଘୃତ ଦୀପ ବନ୍ଦାଇବ ।
ନବତନ ବସ୍ତ୍ର ଥୋଇ ଏ ଗ୍ରନ୍ଥ ଶୁଣିବ ॥
ଗୁରୁବାରେ ସୋମବାରେ ମଙ୍ଗଳ ଯେ ଦିନ ।
ଶୁକଳ ତିଥିରେ ଶୁଣାଇବ ସାଧୁଜନ ॥
ଜ୍ୟେଷ୍ଠ ଯେ ଚଇତ୍ର ପୁଷ ନିଷେଧ କରିବ ।
ନବତନେ ଶୁଣାଇ ଯେ ନବମାସେ ଦେବ ॥

ଶୁଣ ଆହେ ରାମ ଦାସ ତୁମ୍ଭେ ବାର ଯୋଏ ।
ଖୋଳ କରତାଳ ଗୁଣ କଳନା ନ ଯାଏ ॥
କଳିଯୁଗେ ଯେଉଁଜନ କହିବ ସୁଚିତ୍ତେ ।
ମନ୍ତ୍ର ପୂଜା କରିବାକୁ ଯେନିଥିବ ଚିତ୍ତେ ॥
ସେ ଜନ ସକଳଠାରେ ଯଶ ପୂର୍ଣ୍ଣ ହେବ ।
ରାଜସିଂହାସନେ ବସି ସୁଖେ ବିହରିବ ॥

ଶୁଣ ହେ ଗୋପାଳ ଦାସ ତୁମ୍ଭେ ବାରହିଆ ।
ଗୋଲଗ ଆୟୁଧ ଧର ଦୃଢ଼ ମନେ ଏହା
ଏମନ୍ତ ହୃଦରେ ଧର ପାପ କରେ ନାଶ ।
ପରଧନ ପରସ୍ତ୍ରୀ ନ କରିବ ଆଶ ॥
ଶୁଣ ଆହେ ସୁଦାମ ପ୍ରଧାନ ବୀର ତୁମ୍ଭେ ।
ତୁମ୍ଭଙ୍କୁ କହିଲୁ ଆମ୍ଭେ ଭଗତ ଆରମ୍ଭେ ॥

—: ଏଠାରେ ପଦ୍ଧ ବୋଲିବେ —

ଗୁରୁଭକ୍ତିଗୀତା ପ୍ରଥମ ଖଣ୍ଡ ଶୁଣିବ ।
ଏଠାରେ ମୁକୁନ୍ଦ ଦାସଙ୍କୁ ପୂଜା ଦେବ ॥
ଗୁରୁଭକ୍ତି ଗୀତା ଦ୍ୱିତୀୟ ଖଣ୍ଡ ଶୁଣିବ ।
ଏଠାରେ ଉତ୍ଥାନ ଦାସଙ୍କୁ ପୂଜା ଦେବ ॥
ଦ୍ୱାପରେ ତୁମ୍ଭ ଆମ୍ଭର ନାହିଁ ଭିନ୍ନାଭିନ୍ନ ।
ସୁଦାମ ରସରେ ତହିଁ ଗଲା କତଦିନ ॥
ତୁମ୍ଭେ ଆମ୍ଭେ ଏକ ଆତ୍ମା ଜୀବର ଜୀବନ । ପଦ୍ଧ ।
ଗଜପଲଙ୍କ ଉପରେ ଶ୍ରୀକୃଷ୍ଣ ବିଜେ କରି ।
ଆଲଟ ସେବା କରୁଛନ୍ତି ଉତ୍ଥାନ ଯେ ଧରି ॥
ଦୁଇ ସହସ୍ର ଗୋପାଳ ମିଳି—
ବୀଣା ତାଳ ବାଇ କରନ୍ତି କେଳି ।
ଗୁରୁଭକ୍ତିଗୀତାରୁ ପ୍ରଥମଖଣ୍ଡ ଅର୍ଦ୍ଧ ଶୁଣାଇବ ।
ଯେ ଜନ ପଢ଼ିବ ଏଠାରେ ଅନନ୍ତ ପୂଜା ଦେବ ॥
ବନେ ବିହାର କରେ ଶ୍ରୀକୃଷ୍ଣ ଯେତେବେଳେ ;
ମୁକୁନ୍ଦ ସେବା କରେ ହରଷେ ତେତେବେଳେ ॥
ବେନ ସହସ୍ର ଗୋପାଳେ ଗୁରୁଭକ୍ତିଗୀତା ତୃତୀୟ ଖଣ୍ଡ ଶୁଣିବ

ପଦ୍ଧ

ପବନଙ୍କୁ ପୂଜା ଦେବ ।

### ଗୀତ

ଶୁଣ ହେ ଉଦାସୀ ଦାସ ସଂସାର-ତାରଣ ।
ଜନମ ଲଭିବ ତୁମ୍ଭେ ଏହୁ ସେ କାରଣ ॥
ଚୂଳ କେଶ ବନ୍ଧିଲେ ସେ ଦୁରିତ ନ ଥାଇ ।
ମିଛ ନ କହିବ ମୁଖେ ଶାନ୍ତଚିତ୍ତେ ରହି ॥
ଶୁଣ ହେ ଦ୍ୱାଦଶଜନ ହେତୁ ଚିତ୍ତ ହୋଇ ।
ତୁମ୍ଭେ ବାରଜଣ ଅଟ ଆମ୍ଭ ଶଖାସ୍ୱଭ ॥
କଳିଯୁଗେ ଗୁରୁଶିଷ୍ୟ ଲେଖିବ କାରଣେ ।
ଅପଥ୍ୟ ଦ୍ରବ୍ୟକୁ ଚିତ୍ତେ ନ କରିବେ ଷଣେ ॥
ଶୁଣ ଆହେ ବ୍ରଜଜନ ଗୁପତ ସେ ଜନ୍ମ ।
ଓଡ଼ରାଷ୍ଟ୍ରେ ତୁମ୍ଭର ସେ ରହିଥିବ ନାମ ॥

### ପଦି ।

ତାଳ ବନେ ବିହାର ସେ ଶ୍ରୀକୃଷ୍ଣ କରନ୍ତେ ।
ପବନ ଦାନ୍ତ ହେ ବଟେ ଯଦି ଯେମନ ହସ୍ତେ ॥
ସହସ୍ର ଗୋପାଳ ହୋଇଣ ସଙ୍ଗ ।
ଷଣ୍ଡୁମା ତାଳ ଗୀତ ନାନାରଙ୍ଗ ॥

### ଗୀତ ।

କଳିଯୁଗେ ଧୂମ୍ରପାନ ସମସ୍ତେ କରିବେ ।
ଧୂମ୍ରପାନ କଲେ ଗୁରୁ ଜଳ ନ ପାଇବେ ॥
ପିତୃଲୋକମାନେ ତାର ନ ପାଇବେ ଜଳ ।
ଦୁର୍ଗନ୍ଧ ଅଟଇ ସେହୁ କହିଥିବେ ପର ॥

### ପଦି ।

ଗୁରୁଭକ୍ତ ଗୀତା ତୃତୀୟଖଣ୍ଡ ଶୁଣିବ ।
ସେ ଜନ ଧନ ଲକ୍ଷ୍ମେ ହଡିବ ।
ଏଠାରେ ଆନନ୍ଦକୁ ପୂଜା ଦେବ ॥

ଚଥ:ଚ :—

ଗୁରୁଭକ୍ତ ଗୀତା ତୃତୀୟ ଖଣ୍ଡ ଶୁଣିବ ।
ଖଣ୍ଡରୁ ଅଧେ ଶୁଣି ଗୋବିନ୍ଦଙ୍କୁ ପୂଜା ଦେବ ॥
ଗୋବିନ୍ଦ ଚରଣେ ସେବା କରଇ ।
ସହସ୍ରେ ଗୋପାଳ ତା ସଙ୍ଗେ ଥାଇ ॥
ଶଙ୍ଖ ମୁରଲୀ ମୃଦଙ୍ଗ ବାଜଇ-ନୃତ୍ୟ କରଇ ।
ଏଠାରେ ମଥୁନ୍ଦିକୁ ପୂଜା ଦେବ ।
ଶୁଣ ହେ ହରଷ ହୋଇ ଏକମନ କରି ।
ଗୋପାଳ କୁଳରେ ଜାତ କଲେ କି ସେ ହରି ॥
ଗୋପାଳ କୁଳକୁ ତାର ତୁମ୍ଭେ ଅଟ ଗୁରୁ ।
ବିଶ୍ୱାସ ପ୍ରଧାନ ସେ ତୁମ୍ଭଙ୍କୁ ସେଣୁ କରୁ ॥
ତୁମ୍ଭଙ୍କୁ ବିହିଣ ସେହୁ ସିଦ୍ଧ ସେ କରିବ ।
ମାଛ ମାଂସ ତେଜିଣ ଯେ ଗ୍ରହ ସେ ମଜ୍ଜିବ ॥

ପଢ଼ :—

ହେମ ବନେ ବିଜୟେ କଲେକ ବନମାଳୀ ।
ଆନନ୍ଦ ଦାସ ତହିଁ ସୁମର ସେ ଢାଲି ॥
ରସିକ ସହସ୍ର ଗୋପାଳ ସେ ମେଳେ ।
ବୀଣା ତାଳେ ଖୋଳ ବାଜନ୍ତ୍ର ହେଲେ ॥
ଗୁରୁଭକ୍ତ ଗୀତାରୁ ଦ୍ୱାଦଶନ ଶୁଣିବ ।
ଏଠାରେ ବୃନ୍ଦାବନ ଦାସ ପୂଜା ଦେବ ॥
କଳିଯୁଗେ ତୁମ୍ଭେ ବାର ପ୍ରଭୁର ସେ କର ।
ତୁମ୍ଭ ଦେଖାଦେଖି ଯେ କେ ଶିଖିବେ ସେ ନର ॥
ଯେହୁ ସେ ପଢ଼ିଣ ସେ ତୁମ୍ଭଙ୍କୁ ନ ସୁମର ।
ବିଶ୍ୱାସେ ମିଶିଲେ ଯେହ୍ନେ ଧାନରେ ଅଗାଡ଼ି ॥
ତୁମ୍ଭଙ୍କୁ ସୁମରି ଯେବେ କରିବେ ବିଶ୍ୱାସ ।
ତୁମ୍ଭେ ଅଟ ଗୋକୁଳେ ଶ୍ରେଷ୍ଠ ବାର ଶିଷ୍ୟ ॥

ପଦ୍ଧ :—

କୁମୁଦ ବନରେ ଯେ ବିଜେ କରି ହରି ।
ବାଳକ ବାସେ ଭୋଜନ କରାନ୍ତି ଶ୍ରୀହରି ॥
ସଙ୍ଗତେ ସହସ୍ର ଗୋପାଳ ଧେନୁ ।
ବନ ଭୋଜ ସେବା ପୂରଣ ବେନୁ ॥
ଗୁରୁଭକ୍ତ ଗୀତା ଦ୍ୱିତୀୟ ଖଣ୍ଡ ବଡ଼ ଗମ୍ଭୀରେଣ ।
ଶ୍ରବଣ କରି ବସ୍ତ୍ର ଦାସଙ୍କୁ ପୂଜା ଦେବ ॥

ଗୀତ :—

ଶୁଣ ଏକମନ ହୋଇ କୃଷ୍ଣସଙ୍ଗ ଦାସ ।
ଦ୍ୱାଦଶ ଗୋପାଳ ଜାଣି ଶୂନ୍ୟ ଯେ ସହାସ ॥
ସତ୍ୟଯୁଗେ ଋଷିଜନ୍ମ ତ୍ରେତାରେ ବାନର ।
ଦ୍ୱାପରେ ଗୋପରେ ଲୀଳା କଲି ରାସ କର ॥
ଶୂନ୍ୟରାସ ଅନନ୍ତ ଯୁଗରେ ତୁମ୍ଭ ଧ୍ୟାନ ।
ସତ୍ୟଯୁଗରେ ଭଗବାନରେ ଦେଲେ ମନ ॥
ତ୍ରେତୟାରେ ଶ୍ରୀରାମ ସଙ୍ଗତେ ଲୀଳା କରି ।
ଦ୍ୱାପରେ ଶ୍ରୀକୃଷ୍ଣ ସଙ୍ଗେ ଚରାଇ ବାଛୁରି ॥
ପଥେ ବେଲବନେ ବିଜେକଲେ ଯେ ଶ୍ରୀଧର ।
ବୃନ୍ଦାବନ ବାସେ ପୂଷ୍ପ ବଏ ହଳଧର ॥
ଏକ ସହସ୍ରେ ଗୋପାଳ ସଙ୍ଗତେ ବିହାର ।
ମୁରଲୀ ବଜାଇ ଅତି ମଧୁର ॥
ଗୁରୁଭକ୍ତ ଗୀତା ଯେତନେ ଶୁଣିବ ।
ଧନ ଜନ ପ୍ରାପତ ହୋଇବ ॥
ଏଠାରେ ପଢ଼ିଲେ ସୁଦାମ ପୂଜା ଦେବ ।

ଗୀତ :—

କଳିଯୁଗେ ଚୈତନ୍ୟ ଗୁଣ ମୁଖେ ଗାଅ ।
କଲଙ୍କୀ ବିହାର କର ତୁମ୍ଭେ ବାର ପୋଅ ॥

ଶୁଣିଣ ହରଷ ମନେ ଗୋପକୁଳ ମଣି ।
କଳିଯୁଗେନଷ୍ଟ ଭ୍ରଷ୍ଟ ହେବେ ସାଧୁ ପ୍ରାଣୀ ॥
ଚୌକରେ ବସିବେ ନରକକ୍ଷରେ ଗମିବେ ।
କମଳ ଭୁଣ ଆସନ ଦୂର କର ଦେବେ ॥
ଦ୍ୱନ୍ଦ୍ୱେ ଛନ୍ଦେ ମଜ୍ଜିବେ ସେ ଦୃଢ଼ପଣେ ଚର ।
ଏଥିରେ ନ ପଡ଼ ତୁମ୍ଭେ ଥିବ ବାର ସୁତ ॥

ପଦ:—

କଦମ୍ବ ବନେ ଶ୍ରୀକୃଷ୍ଣ ବଜାୟ ସେ କର ।
ବସ୍ତ୍ର ଦାସେ ପୁଷ୍ପ ସେବା କରନ୍ତ ଶ୍ରୀହର ॥
ସହସ୍ର ଗୋପାଳ ସଙ୍ଗତେ ମଲ୍ଲ । •
ତାଳ ବାଜଇ ଖେମଟା କୁଣ୍ଡଳୀ ॥
ଗୁରୁଭକ୍ତି ଗୀତା ସମାଧି ସାଧିବ ।
ଦ୍ୱିତୀୟ ଖଣ୍ଡ ଏଠାରେ ମଧୁଦାସଙ୍କୁ ପୂଜା ଦେବ ॥

ଗୀତ:—

କହିବା ଉତ୍ତମ କଥା ଗୁପତ ବଚନ ।
ହେତୁ କର ଗୁପତେ ଘେନିବା ବାରଜଣ ॥
କଳିଯୁଗେ ସମସ୍ତେ ହୋଇବେ ପୂଣ ଦାସ ।
ଗୁରୁଦୀକ୍ଷା ଏଡ଼ିଣ ସେ ମୁଁ କାର ପ୍ରବେଶ ॥
ମୁଁ କାର କରିଣ ସେ ଅଲପେ ନାଶ ଯିବେ ।
ପଦ୍ମେକ ଭଗତ ସେ ସେ କଳଙ୍କୀ ସେବିବେ ॥

ପଦ—

କୁମୁଦ ବନେ ଯନ୍ତ୍ର ବଜାୟେ ଗୋବିନ୍ଦ ।
ସହସ୍ର ଗୋପାଳ ସଙ୍ଗତେ ରଙ୍ଗେ ।
ଝର୍କି ଡମ୍ବରୁ ସେ ତାଳ ବଜାଏ ।

ଗୁରୁଭକ୍ତ ଗୀତା ଛନ୍ଦ ଶୁଣିବ ।
ଦ୍ୱିତୀୟ ଖଣ୍ଡ ଏଥେ ରଚିବ ॥
ଏଠାରେ ଯ ଭକ୍ତଙ୍କୁ ପୂଜା ଦେବ ।

ଗୀତ—

କହୁବା କଥାସ୍ୱେ ମନ ଦୃଢ଼ ହେଉ କର ।
ଷଷ୍ଠରେ ରଚନା କର ତୁମ୍ଭେ ଛତ ନର ॥
ଅବର ଛନ୍ଦ ଜନର ନାହିଁ ବାଜ ଲେଶ ।
ନପୁଂସକ ଶରୀର ଯେ ବଇରାଗ ବେଶ ॥
ବୃନ୍ଦ ଗୁଞ୍ଜ ତପସ ଯେ ଗୃହେ ରଖିଥାଇ ।
ତାହାର ତେଜରେ କାଳ ଘରେ ନ ପଶଇ ॥
ଭଣ୍ଡୀର ବନରେ ଯେବେ ଭଜେ ଦାମୋଦର ।
ମଧୁ ଦାସ ଫଳ ପଦ୍ମ ଦ୍ୱାଦଶ ମୁଖର ।

ପଦ—

ଏକ ସହସ୍ର ଗୋପାଳ ଯେଜଣ ।
ମର୍ତ୍ତଲ ତାଳବନେ ନାରଦୀ ବାଇଣ ॥
ଗୁରୁଭକ୍ତଗୀତା ଯେ ଛନ୍ଦ ବୁଝିବ ।
ପ୍ରଥମ ଖଣ୍ଡ ପଢ଼ ଚୂଡ଼ ଅଟେ ।
ଏଠାରେ ବାଳକ ଦାସ ପୂଜାଦେବ ।

ଗୀତ—

ଶୁଣ ଆହେ ସଙ୍ଗତ ଭାଇ ହେ ଗୋପାଳ ।
ଗ୍ରାମ ଅଷ୍ଟ ମିଶ୍ରି ଯେ ଯେ ଅଟେ ବୃନ୍ଦାବନ ।
ଯେ ବେଦ ଭ୍ରଅଙ୍କ ବଂଶେ ତୁମ୍ଭେ ଥିବ ମନ୍ତ୍ରୀ ।
ତୁମ୍ଭ ଅଂଶେ ସମସ୍ତ ଗୋପାଳ ଥିବେ ରାଜା ॥
ଭଗ ବନାପନା ଯେଉଁ କାର୍ଯ୍ୟ ଅକାର୍ଯ୍ୟରେ ।
ଢଙ୍କାର କରବ ତୁମ୍ଭେ ସାହାସ ରସରେ ॥

ମାଛ ମାଂସ ଅରୁ ଗଞ୍ଜା ଧୂମ ଯେ ବଜର ।
ଏ ଜନ ଆଗରେ ଶାସ୍ତ୍ର ନ କର ଗୁମ୍ଫନ ॥

ପଦ୍ୟ :—

ଖଣ୍ଡର ବନରେ ପଦ ବହ୍ମାର ଅନନ୍ତ ।
ବଳଦେବ ପାଦ ସେବା ମାଧବ କରେ ତ ॥
ସହସ୍ର ଗୋପାଳ ବୃନ୍ଦାବନେ ତୋଷେ ।
ମୁରଲୀ ସଙ୍ଗୀତ ମୃଦଙ୍ଗ ଘୋଷେ ॥

ଗୀତ :—

ପର ଧନ ପରସ୍ତ୍ରୀ ଯେ କରେ ହରଣ ।
ନିନ୍ଦୁକ ଜନଙ୍କୁ ଏହା ନ କର ଶ୍ରବଣ ॥
ଦାମ୍ଭିକ ମୁଁ କାର ପଣ ଯେ ଜନ ଭଣବ ।
ସେ ଜନ ଆଗରେ ଏହୁ ପାଠ ନ ପଢ଼ିବ ॥
ପଞ୍ଚାଙ୍ଗ ଅଷ୍ଟାଙ୍ଗରେ ଦ୍ୱାଦଶ ଗୁଣପଞ୍ଜା ।
ସେ ଜନଙ୍କୁ ବୃନ୍ଦାବନ ମନ୍ତ୍ର ସବୁ ଭଜ ॥
ଶ୍ରୀଗୁରୁ ଦୂଷିତ ହେଲେ ତାଙ୍କୁ ହେବ ଶାଷା ।
ସମାଧିରେ କୋଟି ଯେ ତାହାଙ୍କୁ ହେବ ଦେଶା ॥

ପଦ୍ୟ :—

ଫଣିବନେ ଶ୍ରୀକୃଷ୍ଣ ବଳଦେବ ହଳଧର ।
ସୁଦାମ ଦାସ ଯେ ପୁଣ ଦଅନ୍ତ ଛୀର ॥
ସହସ୍ର ଗୋପାଳ କରନ୍ତ ନାଟ ।
ମୃଦଙ୍ଗ ରବ ତ କରେ ଝଡାଟ ॥
ଦେବ ଷୋଳସହସ୍ର ବାଳି ପ୍ରଧାନ ।
ଶ୍ରୀକୃଷ୍ଣଲୀଳାରେ ନାମ ଗାୟନ ॥
ଏଠାରେ ପୂଜା ରସାବଳୀ

---

ମୃଦଙ୍ଗ ସ୍ୱରାଷ୍ଟ ବଜା ଝଡାଟ—ଗ

ଗୀତ :—

ଯଦ୍ୱେ ଭଗତମଧ୍ୟରେ ଯେହ୍ନ ଏକ ଜଣ ।
ଅଚ୍ୟୁତ ବଚନ ସ୍ନେହ୍ନ ଗୁପତେ ବଖାଣ ॥
ଶ୍ରୀଗୁରୁଭଗତଗୀତା ପୂଜାର ବିଧାନ ।
ଗୁରୁଦ୍ୱାରେ ପୂଜିବ ଯେ ଦେଇ ଭୋଗମାନ ॥
ଧନଜନ ପୁଣ ତାର ବର୍ଜନ ନୋହିବ ।
ଦ୍ୱାଦଶ ଗୋପାଳପୂଜା ଯେ ଜନ କରିବ ॥
ଦିନୁଁ ଦିନ ଧନ ଜନ ବଢ଼ଇ ତାହାର ।
ଗ୍ରନ୍ଥକୁ ଭକ୍ତି ପୂଜିଲେ କାଳ ହୋଏ ଦୂର ॥
ରୋଗ ଶୋକ ଦୂର ହୋଇ୍ୱ ଶ୍ରବଣେ ଶୁଣିଲେ ।
ଶ୍ରୀମୁଖ ବଚନ ଯାନ ଅଚ୍ୟୁତ କହିଲେ ॥

ଇତି ଶ୍ରୀ ଗୁରୁଭକ୍ତଗୀତାୟାଂ ଦ୍ୱିତୀୟଖଣ୍ଡେ ଗୁରୁଶିଷ୍ୟସଂବୋଧନେ
ପୂଜାବିଧିବର୍ଣ୍ଣନେ ନାମ ଅଷ୍ଟାଦଶ ପଟଳ ।
ଇତି ଦ୍ୱିତୀୟ ଖଣ୍ଡ ସମ୍ପୂର୍ଣ୍ଣ ।



ମହାରାଜା ଶ୍ରୀରାମଚନ୍ଦ୍ର ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରେସ—୨୯।୫।୭୦-୧୦୦୦

